# ଷଡ଼ରସ

---

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

ପ୍ରକାଶକ

ଓଡ଼ିଶା ଷ୍ଟୁଡେଣ୍ଟସ୍ ଷ୍ଟୋର

ବାଲୁବଜାର କଟକ—୨

ନୂତନ ସଂସ୍କରଣ
୧୯୬୮

ମୂଲ୍ୟ ଦୁଇଟଙ୍କା ପଚିଶ ପଇସା ମାତ୍ର

## ସୂଚୀ



* ଶ୍ରୀ ପ୍ରେମଚନ୍ଦଙ୍କର ଗୋଟିଏ ଗଳ୍ପର ଛାୟାରେ ।

କୁଶୀଳବ:—

ମାଧବବାବୁ—ରମେଶଙ୍କ ଶ୍ୱଶୁର

ରମେଶ—ଡେପୁଟି

ବଡ଼ବୋହୂ—ରମେଶଙ୍କ ଭାଉଜ

ଶାନ୍ତ—ବଡ଼ବୋହୂଙ୍କ ଝିଅ

ଝୁନା—ବଡ଼ ବୋହୂଙ୍କ ପୁଅ

କୁସୁମ—ଆଣ୍ଟି

ଲୀଳା—ରମେଶଙ୍କ ସ୍ତ୍ରୀ

ନର୍ସ—

---

## ପ୍ରଥମ ଦୃଶ୍ୟ

( ବୈଠକ ଖାନା—ଆଧୁନିକ ରୁଚିରେ ସଜ୍ଜିତ । ଆରାମ ଚୌକି ଉପରେ ବସିଛନ୍ତି ମାଧବବାବୁ । ଅଳ୍ପ ଦୂରରେ ଆଉ ଖଣ୍ଡିଏ ଚୌକିରେ ବସିଛନ୍ତି ରମେଶ, ରମେଶ ମ୍ଳାନ । ସେ ଖଣ୍ଡିଏ ବହି ଧରି ଖାଲି ପୃଷ୍ଠା ପରେ ପୃଷ୍ଠା ଓଲଟାଉଛନ୍ତି । କୌଣସି ପୃଷ୍ଠା ପଢ଼ିବା ପରି ମନେ ହେଉନାହିଁ । ବହିଟିର ମୂଳ ପୃଷ୍ଠାରୁ ଶେଷ ପୃଷ୍ଠା ଯାଏ ଥରେ ଓଲଟାଇ ଗଲେ । ପୁଣି ଥରେ ଓଲଟାଇବା ଆରମ୍ଭ କରିଛନ୍ତି ସେ, ମାଧବ ବାବୁ କହିଲେ ତାଙ୍କୁ । )

ମାଧବ—ବୁଝିଲ, ପରେଶ ବାବୁ ଥିଲେ ଜଣେ କର୍ତ୍ତବ୍ୟପରାୟଣ ସାଧୁ ପ୍ରକୃତିର ଲୋକ, ତେଣୁ ତାଙ୍କର ଯଥାକର୍ତ୍ତବ୍ୟ ସେ ସାଧନ କରିଯାଇଛନ୍ତି ।

ରମେଶ—ହଁ, ସେ କର୍ତ୍ତବ୍ୟର ତ ପୁଣି ପରିମାଣ ଅଛି । ଆତ୍ମବଳୀ ଦେଇ ଏଭଳି କର୍ତ୍ତବ୍ୟସାଧନର ଅର୍ଥ ବୁଝନ୍ତି କେତେ ଜଣ ?

ମାଧବ—ପରେଶ ବାବୁ ଯେ ତୁମର ବଡ଼ଭାଇ ।

ରମେଶ—ହଁ, ବଡ଼ଭାଇ । ମୋ ଆଗରୁ ଜନ୍ମ ତାଙ୍କର, ଏଇ ଅପରାଧରୁ ସେ ଓଳିଏ ଖାଇବେ ? ଏଇ ଦୋଷରୁ ସେ ସକାଳୁ ରାତି ଦଶଟା ଏଗାରଟା ପର୍ଯ୍ୟନ୍ତ ବିଶ୍ରାମହୀନ ଭାବେ ଖଟି ଖଟି

ମରନ୍ତି । ଧନେ ହେଲେ ଖଣ୍ଡିଏ ଭଲ ଲୁଗା ପିନ୍ଧିବାକୁ ବା ଗଣ୍ଡିଏ ସୁଖରେ ଖାଇବାକୁ ତାଙ୍କ ଜୀବନରେ ପାଇ ନାହାନ୍ତି । ଆଉ ନୂଆବୋଉ ତ ମର୍ତ୍ତ୍ୟର ମାନବୀ ନୁହନ୍ତି । ପିଲାଦିନରୁ ବାପାମାଆଙ୍କୁ ହରାଇ, ମୁଁ ବୁଝି ନ ଥିଲି ମୋର ବାପା ବୋଉ ନାହାନ୍ତି ବୋଲି । ପନ୍ଦରଟି ଟଙ୍କା ବେତନର ସ୍କୁଲ୍ ଶିକ୍ଷକ । ସଞ୍ଜ ସକାଳେ ଟିଉସନ କରି ଆଉ କୋଡ଼ିଏ ପଚିଶଟି ଟଙ୍କା ସେ ରୋଜଗାର କରୁଥିଲେ । ମୋତେ ପାଠ ପଢ଼ାଉଥିଲେ । ମୁଁ କଟକ ପଢ଼ିବାକୁ ଗଲାପରେ ଭାଇ ଭାଉଜ ଦିହେଁ ଓଳିଏ ଖାଆନ୍ତି । ସ୍ତ୍ରୀକୁ ମଧ୍ୟ କଅଣ କହିବା କର୍ତ୍ତବ୍ୟ ? ମୋ ଆଗରୁ ତାଙ୍କର ଜନ୍ମ, ଏଥିପାଇଁ ଭାଇଙ୍କି ଯଦି କହନ୍ତି ମୋତେ ଯୋଗ୍ୟ କରାଇବା ତାଙ୍କର କର୍ତ୍ତବ୍ୟ, ଓଳିଏ ଉପାସ ରହି

ମଧୁ—ତେବେ ନୂଆବୋଉଙ୍କ ସମ୍ବନ୍ଧରେ କଅଣ କୁହାଯିବ ?

ମାଧବ—ଏ କଥାର ବିଭିନ୍ନ କାରଣ ଥାଇପାରେ । ହୁଏ ତ ସ୍ୱାମୀଙ୍କର ମନରକ୍ଷା, ଅଥବା ସ୍ୱାମୀ ଖାଉ ନ ଥିବାରୁ ସେ କିପରି ଖାଇବେ ? କିମ୍ବା ସେ କିଛି ଖାଉଥିଲେ, ଯାହା ତୁମେ ବା ତୁମ ଭାଇ ପରେଶ ବାବୁ ଜାଣନ୍ତି ନାହିଁ, ଇତ୍ୟାଦି ଇତ୍ୟାଦି ।

ରମେଶ—( ଟିକିଏ ଉତ୍ତ୍ୟକ୍ତ ହେବାପରି ) ନୂଆବୋଉ ମନୁଷ୍ୟ ନୁହନ୍ତି, ସେ ଦେବୀ । ତାଙ୍କ ପକ୍ଷେ ଏ ଧାରଣା ମନକୁ ଆଣିବାଟା ପାପ ।

ମାଧବ—ସେ ଯାହାହେଉ, ଏଇକ୍ଷଣି ତ ଆଉ ପରେଶ ବାବୁ ନାହାଁନ୍ତି । ତାଙ୍କ ଯିବାର ମାସେ ହୋଇଗଲା । କ୍ରିୟା କର୍ମ ସବୁ ସରିଗଲା । ନଜର ଏମାର ତ ତୁମକୁ ଦେଖିବାକୁ ହେବ ! ଛୁଟି ନେଇ ଘରେ ବସିଲେ ତ ଚଳିବ ନାହିଁ ?

ରମେଶ—ହଁ, ନୂଆବୋଉ ବି ସେଇକଥା କହୁଥିଲେ । ତାଙ୍କ ଅବସ୍ଥା ବଡ଼ ଶୋଚନୀୟ । ବର୍ଷବର ଜ୍ୱର ଭୋଗୁଛନ୍ତି । ଭାଇଙ୍କ ପୁଅଝିଅ ଦିଓଟି ତ ବେଶି ହାରି ଯାଇଛନ୍ତି । ଘରେ କେହି ଆଉ ତ ନାହିଁ, ଯେ ସେମାନଙ୍କ ଖବର ଟିକଏ ନେବ ! ନୂଆବୋଉ ଜରରେ ଜରରେ ଘର ଗୋଟାକର କାମ ତୁଲଉଛନ୍ତି । ଘରର ଏପରି ଅବସ୍ଥାରେ·····।

ମାଧବ—କିନ୍ତୁ, ଏଣେ ଯେ ଲୀଳାର ଦେହ ଭଲ ରହୁନାହିଁ ! ଆଉ ରହିବ ବା କେମିତି ? ସେଠି ତମ ଘରର ଯେ ବ୍ୟବସ୍ଥା, ସେଥିରେ ଲୀଳାର ଦିନଟାଏ ଚଳିବା ବି ଅସମ୍ଭବ । ମୁଁ ତ ଆଶ୍ଚର୍ଯ୍ୟ ହେଉଛି, ସେ କିପରି ବର୍ଷେକାଳ ତୁମ ଘରେ କାଟି ଆସିଲା । ଅବଶ୍ୟ ମୋର ସେଥିରେ କଥା କହିବାର କିଛି ନାହିଁ । ଘରଟି ଥିଲା ଜଣେ ଦରିଦ୍ର ଶିକ୍ଷକର । ସେ ଘରକୁ ଆଣିଥିଲେ ସାଧାରଣ ପରିବାରର ଗୋଟିଏ ଝିଅକୁ ବୋହୂ କରି । କିନ୍ତୁ ପରିବେଶ ବଦଳି ଯାଇଛି, ବର୍ତ୍ତମାନ ସେ ଘରେ ରହୁଛ ତୁମେମାନେ—ଜଣେ ଡେପୁଟି ମାଜିଷ୍ଟ୍ରେଟ; ଆଉ ତାଙ୍କର ସ୍ତ୍ରୀ ଜଣେ ଡେପୁଟିଙ୍କର କନ୍ୟା ।

ରମେଶ—ଏକ ଗରିବ ପରିବାରରେ ମୋର ଜନ୍ମ; ଗରିବ ଆମେମାନେ । ଏ କଥା ତ ଆପଣ ବେଶ୍ ଜାଣିଥିଲେ । ଭାଇ ତ ସବୁକଥା ଆପଣଙ୍କୁ କହିଛନ୍ତି । ପରିବାରର ଅବସ୍ଥା ଗରିବ, କିନ୍ତୁ ଗରିବ ମନ ନେଇ ପରିବାରଟି ଚଳେ ନାହିଁ; ଏ କଥା ତ ଆପଣଙ୍କୁ ବୁଝାଇବାକୁ ହେବ ନାହିଁ ?

ମାଧବ—କିନ୍ତୁ ଆଜି ଭଦ୍ରଭାବରେ ଚଳିବାର ଅର୍ଥ ମନ ଆଉ ଧନ, ଏ କଥା ବି ତମକୁ ତ ବୁଝାଇବାକୁ ହେବ ନାହିଁ ? ଲୀଳାର ଜନ୍ମ ଗୃହ ତଳେ ନୁହେଁ । ତା'ପରେ ଅଳ୍ପଦିନ ପରେ

ସେ ହେବ ମାଆ । ଡମ ଘରେ ଚଳିବା ତା ପକ୍ଷେ ଅସମ୍ଭବ ହୋଇ ଉଠୁଛି । ତେଣୁ ନିକଟରେ ମୁଁ ଗୋଟିଏ ଭଡ଼ାଘର ଠିକ୍ କରିଛି । ଲୀଳାକୁ ନେଇ ତୁମେ ସେଇଠି ରହ ।

ରମେଶ—କିନ୍ତୁ—

ମାଧବ—ଲୀଳାର ପିତା ହିସାବରେ ମୋର କର୍ତ୍ତବ୍ୟ ମୁଁ ସ୍ଥିର କରି ସାରିଛି । କିନ୍ତୁ ପାଇଁ କିନ୍ତୁ ସ୍ଥାନ ନାହିଁ ଏ ନିଷ୍ପତ୍ତି ଉପରେ ଆଉ । ବହୁତ ବିଚାର କରି ବିଚାର ମୁଁ କରି ସାରିଛି, ଲୀଳାକୁ ମୁଁ କାଲି ସ...ାକୁ ସେଠିକି ପଠାଇ ଦେଉଛି । ମୂଜାଣି ଚାକର ବି ଠିକ୍ କରିଦେଇ ସାରିଛି । ତୁମକୁ ଏଇ ଖବରଟା ଦେବାକୁ ଡାକିଥିଲି । ତୁମେ କାଲି ଭିତରେ ସେଠିକି ଚାଲିଆସ । ବୁଝିଲ ? ମୁଁ ଯାହା କରୁଛି, ତୁମମାନଙ୍କ ମଙ୍ଗଳ ପାଇଁ ।

ରମେଶ—କଥାଟାକୁ ଥରେ······

ନେପଥ୍ୟରୁ—ବାବା ! ଏମାନେ ଅପେକ୍ଷା କରୁଛନ୍ତି ଯେ !

ମାଧବ—ହଁ, ହଁ । ( ଚୌକିରୁ ଉଠି ) ଆଜ୍ଞା, ମୁଁ ଯାଏଁ, ଲୀଳା ଡାକୁଛି । ଲୀଳାର କଏ ଗୁଡ଼ଏ ବନ୍ଧୁ ଆସିଛନ୍ତି । ଟିକିଏ ଦେଖେଁ ସେମାନଙ୍କୁ । ତୁମେ ପାରିଲେ ଆଜି ଥରେ ବସାଟାକୁ ଦେଖିନେବ । ମୁଁ ଗାଡ଼ି ପଠାଇ ଦେଉଛି । ବୁଝିଲ ? ( ଚାଲିଗଲେ । ରମେଶ ସ୍ଥିର ହୋଇ ରହିଲେ )

———

## ଦ୍ୱିତୀୟ ଦୃଶ୍ୟ

( ସନ୍ଧ୍ୟା ହୋଇ ଆସୁଛି । ରମେଶର ଘର ଅଗଣାରେ ଗୋଟିଏ ତୁଳସୀଚଉରା । ରମେଶର ବଡ଼ ଭାଇଙ୍କ ଝିଅ ଶାନ୍ତ ସଞ୍ଜ ବଳଟା ନେଇ ଚଉରା ପାଖକୁ ଆସିଲା । ସେ ବଣ୍ଟି ଚଉରା ମୂଳେ ରଖି ଦେଇ ବୋଉକୁ ଡାକଲା । )

ଶାନ୍ତ—ବୋଉ ! ସଞ୍ଜ ହେଲଣି ପରା !

ବୋଉ—ହଁ, ହଁ । ଆଉ ତିନ ଘଣ୍ଟା ଫାଶ ବାକୀ ଅଛି ମା ! ସଞ୍ଜ ଆସିଲା ।

ଶାନ୍ତ—ଦିନ ଦିପହରୁ ଠାଆକରେ ବସିଛୁ ଯେ, ତୋ ଗୋଡ଼ହାତ ଲାଗି ଯାଉନାହିଁ ? ଫାଶ କଅଣ ଅନ୍ଧାରରେ ଦିଶୁଛି ?

ବୋଉ—ଦିଶେ ଲୋ ମାଆ, ଆଲୁଅରେ ଫାଶ ପକାଇବାକୁ ବେଳ ନ ମିଳଲେ ଅନ୍ଧାରରେ ଆଖିକି ଦିଶେ । ମୁଁ ଯାଉଛି ତୁ ସଞ୍ଜ ଦେଇ ଦେ ।

ଶାନ୍ତ—ସଞ୍ଜ ତ ଦେଲଣି, ବାକି ତୁ କଅଣ ସବୁ କହୁ ମତେ ଆସୁ ନାହିଁ ! ମନେ ନାହିଁ ମୋର ।

ବୋଉ—ଆଚ୍ଛା, ହଉ ମୁଁ କହି ଦେଉଛି, ତୁ କହ । ଅଳ୍ପ କଥା ତ, ମନେ ରଖି ଦେଲେ ଯାଆନ୍ତା । କହ—"ଦୀପମ୍ ଜ୍ୟୋତି ପରମ୍‌ବ୍ରହ୍ମ ।"

ଶାନ୍ତ—ହଁ—ଦୀପମ୍ ଜ୍ୟୋତି ପରମ୍‌ବ୍ରହ୍ମ ।

ବୋଉ—ଦୀପମ୍ ଜ୍ୟୋତି ଜନାର୍ଦ୍ଦନ ।
ଶାନ୍ତ—ଦୀପମ୍ ଜ୍ୟୋତି ଜନାର୍ଦ୍ଦନ ।
ବୋଉ—ଦୀପମ୍ ଜ୍ୟୋତି ହରେତ୍ ପାପମ୍ ।
ଶାନ୍ତ—ଦୀପମ୍ ଜ୍ୟୋତି ହରେତ୍ ପାପମ୍ ।
ବୋଉ—ସନ୍ଧ୍ୟାଦୀପ ନମସ୍ତୁତେ ।
ଶାନ୍ତ—ସନ୍ଧ୍ୟାଦୀପ ନମସ୍ତୁତେ ।
ବୋଉ—ଆଉ ଆଉ ପଦେ ? ଗୀତଟା ?
ଶାନ୍ତ—ତୁ ଆସୁନୁ ? ସାଙ୍ଗହୋଇ ଗାଇବା । ଝୁନା ଥିଲେ ସିନା ଗାଆନ୍ତା । ମୁଁ ଏକୁଟିଆ ପାରିବ ନାହିଁ ।
ବୋଉ—ମୋର ସରିଲ—ଯାଉଛି, ତୁ ଗାଉଥା ।
ଶାନ୍ତ—ତୁ ଆ । ଡିଅ ନ ଥିଲ । ଘଡ଼ିରେ ଘଷିଦେଇ ସଞ୍ଜ ଦେଇଛି । ଲଭିଯିବ । ବେଗେ ଆ ।

( ବୋଉ ଆସିଲେ । ହାତରେ ଗୋଟିଏ ଗଳାବନ୍ଧ ବୁଣି ବୁଣି ଆସୁଛନ୍ତି ସେ )

ବୋଉ—କହ—ମନେ ତ ଥିବ ତୋର ।
ଶାନ୍ତ—ଭୁଜତଳେ ମୋତେ ରଖ ମହାବାହୁ
ବାହୁତଳେ ମୋତେ ରଖ ।
ବୋଉ—ହଁ, ବିପୁଳ ଭୁଜ ବିସ୍ତାରି ଦେଲେ ପ୍ରଭୁ
କି ଛାର ଏ ଦୀନ ଦୁଃଖ ( ମୁଣ୍ଡିଆ ମାରିଲେ )
ଶାନ୍ତ—ବିପୁଳ ଭୁଜ ବିସ୍ତାରି ଦେଲେ ପ୍ରଭୁ···
ନେପଥ୍ୟରୁ—ବଡ଼ବୋହୂ ଘରେ ଅଛୁ ?
ଶାନ୍ତ—କିଏ କୁସୁମ ଆଈ ? ବୋଉ ଠାକୁର ସେବା କରୁଛି । ଆସୁ ନାଉଁ ?

କୁସୁମ—(ଆସୁ ଆସୁ) ହିଁ ଲୋ ଶାନ୍ତ ! ସେବା କର କର ତ ଯାହା ଫଳ ପାଇଲ ? ଏଇ ଆଖି ଦେଖୁଛୁ, ଏଇ କାନ ଶୁଣୁଛୁ ।

ବୋଉ—( ମୁଣ୍ଡି ଆମାର ସାର ) ଯା, ମୁଣ୍ଡିଆ ମାର୍ ଶାନ୍ତ ? ( ଶାନ୍ତ ମୁଣ୍ଡିଆ ମାରଲ ) ଆସ ମାଉସି, ଦେହ ସୁଖ ନ ଥିଲ କ ? ୬।୮ ଦିନ ହେବ ଦେଖା ନ ଥିଲ କାହିଁକ ?

କୁସୁମ—ନାଇଁ ଲୋ ଝିଅ, ଆସି ପାରେ ନାହିଁ; ଏକୁଟିଆ ଲୋକ । ଦାଣ୍ଡକୁ ମୁଁ—ବାରକ ମୁଁ । ଆଗକୁ ପଛକୁ ତ ଆଉ କେହି ନାହିଁ । ଆଉ ଦିହ କଥା ପଚାରିଲୁ ଯେ ବଡ଼ବୋହୂ ! ପାଚଲ ଆମ୍ବ, ଟିକଏ ସୁଲୁ ସୁଲିଆ ବାଆ ବୋହିଲେ ଖୁଉଡ଼୍ କିନା ଖସି ପଡ଼ିବ । କେହି ଜାଣିବେ ନାହିଁ, କି କେହି ଶୁଣିବେ ନାହିଁ । ଆଠଦିନ ହବ ଆସି ନ ଥିଲି ଯେ, ମତେ ଲଗୁଛି ଯେମିତି ଆଠବରଷ ହେବ । ଘରଟା କେମିତି କଚ୍ଛଟିଆ ଲଗୁଛି । ଟୁନା ନାହିଁ କ ?

ବୋଉ—ସେ ବଜାରକୁ ଯାଇଛି ।

କୁସୁମ—ଅନ୍ଧାର ହୋଇଛି । ପିଲ ଲୋକ ! ଆଜକାଲ ସହର ବଜାର ଯୋଉ ଗହଳ । ଗାଡ଼ି, ଘୋଡ଼ା, ରିକସା, ମଟର— ଗୋଟାଏ ପେଁ କଲ ବେଳକୁ ଗୋଟାଏ ଟିଣ ଟିଣ କଲଣି । ଘରଠୁ ଆସୁଛୁ ଯେ, ବାଟ ଚାଲିବାକୁ ଛାତି ଥରୁଛି । କେତେ କାହାକୁ ପାଖେଇବ ? ପିଲଟାକୁ ବେଳବୁଡ଼େ ବଜାର ହାଟକୁ ଛାଡ଼ିବୁ ନାଇଁ ଏମିତି, ବଡ଼ବୋହୂ !

ବୋଉ—ନ ଗଲେ ଚଳୁଛି କେଉଁଠୁ ? ଯା ଶାନ୍ତ, ଆଣ୍ଡ ପଦ ଠିଆ-ହୋଇ ରହିଲେ । ପପ ମସିଣା ଖଣ୍ଡେ ଆଣି ଦେ । ଆଲୁଅଟା ଆଣ, ଏଇ ଅଗଣାରେ ବସିବେ ମାଉସି ?

(ଶାନ୍ତ ଚାଲିଗଲା)

କୁସୁମ—ବସିବ ଯେ, ତୁମେ ରଷିକ ଘର ବୁହାଉଛ ବଡ଼ବୋହୂ !
କୋଉ ଘରେ ଅଛି କୁହ, ମୁଁ ମସିଣା ନେଇ ଆସୁଛି ।

ବୋହୂ—ନାଇଁ, ନାଇଁ; ସେ ଆଣିବ । କାମକର୍ମ ଶିଖିବ ଆଉ କୋଉଦିନ ?

(ଶାନ୍ତି ସପ ଆଣି ପକାଇ ଦେଲା)

ଶାନ୍ତି—ଆସ ! ବସ !

ବୋହୂ—ଆଉ ପାନ ଦଖଣ୍ଡ ?

କୁସୁମ—ଥାଉ, ଥାଉ । ସେ କ ଭାଙ୍ଗିବ ପାନ ମ ?

ବୋହୂ—ହଉ, ଆଣୁ ।

ଶାନ୍ତି—ମତେ ଆପେ, ମତେ ଆମେ । ଆଇ ଚୂନାଗୁଆ ଖାଇବଟି? ଗୁଣ୍ଡି ଅଳ୍ପ ଦେବ ନା ?

କୁସୁମ—ହଁ, ତତେ ପୁଣି କୋଉଦିନ ପାନ ଭାଙ୍ଗି ଆସିଲାଣି ମ ?

(ଶାନ୍ତି ଚାଲିଗଲା)

କୁସୁମ—ଏଡ଼କ ବକଟେ ପିଲା । ଆଜି କେତେ ଗେଲବସର ହୋଇ-ଥାଆନ୍ତା ? ନିଆଁ ଲଗା ଦଇବ ସହିଲା ନାହିଁ ବୋଲି ସିନା ? ପରେଶ ପର ପୁଅ ଅକାଳରେ ନ ଯାଏ, କି ଶାନ୍ତି ପରି ଝିଅ ଆଜି ଚୂଲି ମୁଣ୍ଡକୁ···

ବୋହୂ—ନାଇଁ ମାଉସି ! ଆଜଠୁଁ କାମ ନ ଶିଖିଲେ, କିଏ ଜାଣେ ତାଙ୍କ କର୍ମରେ କଅଣ ଅଛି ? ସିନେଇ ଟିକିଏ ଶିଖିଥିଲି ବୋଲି ତ ଆଜି ଛୁଆ ଢଓଟିଙ୍କୁ ତୋକପାଣିରେ ଜିଆଇ ରଖିଛି !

କୁସୁମ—ହଁ ଟିଲା ବଡ଼ବୋହୂ, ସେଇଆ ପରା । ଭଲ ପଦେ, ମନ୍ଦ ପଦେ । ସାଇତରେ ଧନ୍ୟ ଧନ୍ୟ ପଡ଼ୁଛି । ଯିଏ ଶୁଣୁଛି ଟୂନା ବୋହୂକୁ ସଭିଏଁ ପ୍ରଶଂସା କରୁଛନ୍ତି । ପରେଶ ମାଷ୍ଟର

କଅଣ ନ କରିଥିଲି ! ସେ ଖୁଲପିବାର ମାସ ଦ'ଟା ହୋଇ ନାହିଁ, ଗଛମୂଳରୁ ହାଣି ଦେଇଗଲା ରମେଶ ! ଦୋପଟୀ ହେଇଛ, ଦୋପଟୀ ! କଅଣ ନା ପାଠୋଇ ବୋହୂ । ମଣିଷର ସିନା ଦ'ଟା ଆଖି, ଦଇବ ଆଖିର ତ କଳନା ନାହିଁ ।

ବୋଉ—ନାହିଁ ମାଉସି ! ତାଙ୍କର ଦୋଷ କଅଣ ? ମତେ ମୋ ଭାଗ୍ୟ ଫଳବ । ମୋ କାଚ ସିନ୍ଦୂର ତ ମୋତେ ଅଣ୍ଟିଲା ନାହିଁ, ଆଉ ଭଏ ଦେଲେ ନେଲେ କଅଣ ମୋ କରମ ବଦଳିପିବ ?

(ଶାନ୍ତ ପାନ ଦଖଣ୍ଡ ଥାଳିଅରେ ନେଇ ଆସିଲା)

ଶାନ୍ତ—ଆଈ, ହେଇଟି ପାନ ।

କୁସୁମ—( ପାନ ନେଇ, ଦେଖି ) ଆହା ! କି ସୁନ୍ଦର ତ ଖିଲ ମୋଡ଼ି ଆସିଲାଣି, ମୋ ବାସ୍ନାଣୀଟାକୁ ! ( ପାଖକୁ ଟାଣିନେଇ ମୁଣ୍ଡ ଆଉଁଷିଲେ ) ଲକ୍ଷେ ବରଷ ଆଇଷ ପାଇଥା ଲୋ ମାଆ ! ଯୁଗ ରାଇଜ କର । ରାଜରାଣୀ ହୋଇଥା । ଆହା ! ବାପା ଥିଲେ ଆଜି...... ଶାନ୍ତ ପଢ଼ୁଛିଟି କି ବଡ଼ ବୋହୂ !

ବୋଉ—ପଢ଼ିବ ଆଉ କଅଣ ? ଇସ୍କୁଲକୁ ତ ଯାଉ ନାହିଁ । ଟୁନାର ୫ମ ଶ୍ରେଣୀ ହେଲା । ସେ ଇସ୍କୁଲକୁ ଯାଉଛି । ଘରେ ଭାଇଭଉଣୀ ଦୁହିଙ୍କୁ ମୁଁ ଟିକଏ ପଢ଼ାଉଛି ।

କୁସୁମ—ହଁ, ମା ପେଟର ପାଠତକ ନେଲେ ତ ତାର ଦହକ ସୁଖରେ କଟିଯିବ । କି ଦର୍କାର ଲୋ ବୋହୂ ସେ ପାଠୋଇ ହେଇ ! ହେଇଟି, ଯାଇଥିଲି କାଲି ସେ ରମେଶ ଘର ଆଡ଼େ, ରମେଶ ନ ଥିଲା । କଣଣକ ଯାଇଥିଲା । ସାନବୋହୂ ଥିଲା— ପାନ ଖଣ୍ଡେ ଥାଉ ଛେଣିକ, ବସ ବୋଲି ପଦେ କହିଲା ନାହିଁ । ପିଲାଟିକ ଦେଖିବ ବୋଲି ମନଟା ହମ ହମ ହେଲା ଯେ, ଗଲି ଟିକଏ ଦେଖିବାକୁ ।

ଶାନ୍ତ--ଦାଦାଙ୍କ ପୁଅଟି କେଉଁଠିଏ ହେଲଣି ଆଈ ! ବୋଉ ! ତାର ଏକୋଇଶା ହେବ, ଆମେ ଯିବା ନାହିଁ ?

ବୋଉ—ଅଛୁ ତ !

କୁସୁମ—ମଲ, ଅଛୁ ତ କଣ ମ ? କାଲିଠୁ ପରା ପିଲାର ଏକୋଇଶା ଗଲାଣି । କେତେ କଅଣ ଖିଆପିଆ ଭୋଜଭାତ ହେଲା । ତମେସବୁ ଯାଇନାହଁ କ ବୋହୁ !

ବୋଉ—ଯିବ, ପିଲାଟି ବଡ଼ ହେଉ ।

ଶାନ୍ତ—ବୋଉ ! ଦାଦା ଆମକୁ ଡାକଲେ ନାହିଁ ?

ବୋଉ—ଆମେ ପରା କାଲି ସକାଳେ ନ ଥିଲେ । କିଏ ଆସି ଫେରି ଯାଇଥିବ ।

କୁସୁମ—କଅଣ ହେଲା ! କାଳ ଏମିତି ଓଲଟି ଗଲା, ରମେଶ ପୁଅର ଏକୋଇଶା ହେଲା; ବଡ଼ବୋହୂ ଜାଣିଲା ନାହିଁ ! ଏକା ନାହିଁ ଦଗଡ଼, ଯ୍ବା ପୁଣି କାନ ଶୁଣିଲା ! ରମେଶ ପୁଣି ଏମିତି ବଦଳିଗଲା ? ପାଞ୍ଚ ବରଷର ହୋଇଥାଏ, ମାଆ ଗଲେ । ଆଠବରଷରେ ବାପେ ଗଲେ । କୋଳେଇ କାଖେଇ ତେମେ ତାକୁ ମଣିଷ କଲ । ସେପରା ଭାଇ ଥିଲା, ଦାଣ୍ଡରେ ଠିଆକଲା । ବାହାଘରବି କରାଇଲା । ଆଜ ପୁଣି ସେଇ ବୋହୂ, ସେଇ ପିଲାଏ ତାର ଆପଣାର ନ ହେଲେ ? ହଁ ଲୋ, ଜୀଇଥିଲେ କେତେକଥା ଶୁଣିବା, କେତେକଥା ଦେଖିବା ।

ବୋଉ—ନାଇଁ ମାଉସି, ମନେ ନ ଥିବ ତାଙ୍କର ! ହାକିମ ଲୋକ, କେତେ କାମ । କ କାହା ହାତେ ଖବର ଦେଇଥିବେ, ସେ କହି ନାହଁ । କି ମିଳିବ ସେଥିରୁ । ତେମେ ଗୋଟିଏ କାମ କରିବ ।

କୁସୁମ—କରିବ ନାହିଁ ? ଏ କଥା ପୁଣି ପଚାରୁଚୁ ଏଡ଼େ ନାଉନ ହୋଇ !

ବୋଉ—ଗଲୁ ଝିଅ, ଶୋଇଲା ଘରୁ କାଗଜ ମୋଡ଼ାଟା ନେଇ ଆସିବୁ, ( ଶାନ୍ତ ଚାଲିଗଲା ) ମୋର ତ ଗରିବ ଘର କଥା, ପିଲାର ଏକୋଇଶାକୁ କନା ଦିଖଣ୍ଡ କିଣି ଆଣି ହାତରେ ସିଲେଇ କରିଥିଲି ଯେ—

ଶାନ୍ତ—( ଆଣି, ଆସି ) ହେଇଟି ବୋଉ, ଏଇଟା ?

ବୋଉ—ହଁ, ତୁ ଯା, ଚୁଲିରେ କୁହୁଳା ଦେଇପକା । ଅଟା ଗଣ୍ଡିଏ ବେଲି ଦେବୁ । ମାଉସି ! ଆମ ଘରେ ଆଜ ରାତିରେ ଖାଇଲେ ହୁଅନ୍ତା ନାହିଁ ?

ଶାନ୍ତ—ହଁ, ହଁ, ଆଈ ଆମ ଘରେ ଖାଇକରି ଯିବ, ରହ ।

କୁସୁମ—ହଁ, କୋଉଦିନ ଖାଉ ନାହିଁ ଯେ ! ଯେତେବେଳେ ଆସିଲେ ତ ହାତ ବୁଡ଼େଇକରି ଯାଉଛୁ । ଖାଇଲେ କଅଣ ପେଟ ପୂରେ କଲେ ଝିଅ ! ବଚନ ପଦକ ତ ଅମୃତ ।

ଶାନ୍ତ—ବୋଉ ! ତୁ ଆଈ ସାଙ୍ଗେ କଥାବାର୍ତ୍ତା ହଉଥା । ଆଜ ମୁଁ ରାନ୍ଧିକରି ଆଈକି ଖୁଆଇବି ।

କୁସୁମ—ତୁ ରାନ୍ଧିବୁ ? ତୋତେ ରାନ୍ଧିଆସିଲାଣି ?

ଶାନ୍ତ—ହଁ, ଯେମିତି ସିଝା ସିଝି କରିଦେବି, ଆଉ କଅଣ ବୋଉ ହାତ ପରି ହେବ ? ଖଳି ରୁଟି କରିଦେବି ଯେ, ଯାକୋଇ ବୁଢ଼ୀକି ଖାଇବାକୁ ସଜ ହେବ । ବୋଉ, ଯାଉଛି ।

ବୋଉ—ଯା, ତୋ ମନ । ( ଶାନ୍ତ ଚାଲିଗଲା ) ହଁ, କଅଣ କହୁଥିଲି କି ମାଉସି ! ଏଇ ଜାମା ଦିଖଣ୍ଡ ରମେଶଙ୍କ ଘରେ ପିଲାଟି ପାଇଁ ଦେଇଦେବ ।

କୁସୁମ—ହଁ, ମ । ଗଲାବେଳେ ତ ବାଟରେ ଦେଇକରି ଯିବ ।
କଅଣ ବୋଝଭାର ହୋଇଛି ଯେ, ବୋହି ପାରିବ ନାହିଁ ?

( ଟୁନା ଧଇଁ ସଇଁ ହୋଇ ଆସିଛି )

ଟୁନା—ବୋଉ ! ଜାଣିଚୁ ନା, ଗୋଟେ ମଟରଗାଡ଼ି ଏକ୍‌ଦମ୍ ଚିତ୍‌ପଟାଙ୍ଗ୍ ।

ବୋଉ—କଅଣ ଚିତ୍‌ପଟାଙ୍ଗ୍‌ରେ !

ଟୁନା—ବଜାର ପାଖରେ ଯୋଉଁ ବାଙ୍କଟା ନାଇଁ, ସେଇଠି, ସେଇଠି । ଏକଦମ୍ ଗଡ଼ ଗଡ଼, ଗଡ଼ ଗଡ଼, ଦୁମ୍ ( ହସିଲା ) ।

ବୋଉ—କଅଣ କହୁଚୁ ମ ଏମିତି ?

ଟୁନା—ହଁ, ଲୋ ! ବାଙ୍କ ବୁଲିଲା ବେଳକୁ ଗୋଟିଏ ଛୋଟିଆ ପୋଲ ପଡ଼େ । ଯୋଡ଼ାଏ ଷଣ୍ଢ ମାଡ଼ଗୋଳ ହେଉଥିଲେ ସେଠେଇ, ଗାଡ଼ିଟା ଏପାଖ ସେପାଖ ହୋଇ ଓଲଟି ପଡ଼ିଛି ।

ବୋଉ—( ଚମକି ପଡ଼ି ) ଆହା !

କୁସୁମ—କିଏ ରେ ! କାହାର ଗାଡ଼ି ?

ଟୁନା—କେଜାଣି ? ମୁଁ ତ ବଜାରରେ ଥିଲି । ନେ, ଟଙ୍କା ନେ, ଦଶଟଙ୍କା ହେଲା । ଗଣ, ଆଉ କହୁଛି ହୋଇଥାନ୍ତା ଯେ; ଲୋକେ ସବୁ ତ ଦୋକାନବଜାର ଛାଡ଼ି ଦଉଡ଼ିଲେ ମଟର ପାଖକୁ । ଜଣେ ଲୋକ ସ୍ୱେଟରଟା ମୂଲଉଁ ମୂଲଉଁ ଦଶଟି ଟଙ୍କା ଦେଇ ଚାଲିଗଲା ।

କୁସୁମ—କି ଟଙ୍କା ସେ, ପୁଅ ଆଣିଲା, ବଡ଼ବୋହୂ !

ବୋଉ—ମୁଁ ଖଣ୍ଡେ ସୁଏଟର ବୁଣିଥିଲି ଯେ, ତାକୁ ବିକିବାକୁ ନେଇଥିଲା ଟୁନା ।

କୁସୁମ—ସୁଏଟର ବୁଣିକରି ବିକୁଛୁ ? କେତେ ବୁଦ୍ଧି ତତେ ଆସେ ଲୋ !

ବୋଉ—ବେକରେ ଢୋଲ ପଡ଼ିଲେ ବଳେ ଲୋକେ ବଜେଇ ଶିଖନ୍ତି । ସେଇମିତି ବୋଉ ଯାହା ପିଲାଦିନେ ଶିଖେଇଥିଲା, ଗେଲ କଉତୁକରେ ଶିଖିଥିଲ, ଏବେ ସେଇ ହୋଇଛି ପେଟ ପୋଷା ବେଉସା । ଚୂନା ! କଏ ସେ ଲୋକ, କାହା ଗାଡ଼ି—କହୁ ଶୁଣି ନାହୁଁ ତୁ ?

ଚୂନା—ମତେ ଡର ମାଡ଼ିଲା । ମୁଁ ପଳେଇ ଆସିଲି । ଲୋକେ ମଟରଗାଡ଼ି ଚେକାଚେକ କରୁଥିଲେ । ମୁଁ କଅଣ···

( ନେପଥ୍ୟରୁ ଲୋକଙ୍କ କଥାବାର୍ତ୍ତା ଶୁଭିଲା )

ଜଣେ—ଆଉ ଟିକଏ ଉଛୁର ହୋଇଥିଲେ ତ ଯମ ପାଞ୍ଜି ପୋଛି ଦେଇଥାଆନ୍ତା । ସେ ଝିମା ଷଣ୍ଢଟାର ଗୋଡ଼ ଭାଙ୍ଗିଯାଇଛି ।

ବୋଉ—( ଶୁଣି ) ରହ ରହ, ଦାଣ୍ଡରେ କଏ କଅଣ କଥା ହେଇ ଯାଉଛନ୍ତି । ଗୃଳଲ ମାଉସି ! ଶୁଣିବା ।

କୁସୁମ—ତୁ କୁଆଡ଼େ ଯିବୁ ଲୋ, ବଡ଼ବୋହୂ ! ରହ, ମୁଁ ପଗ୍ଭର ସବୁ ବୁଝି ଆସୁଛି । ( ଉଠିଲେ )

ଚୂନା—ମୁଁ ତୋ ସାଙ୍ଗରେ ଯିବ, ଆଈ !

ବୋଉ—ହଁ, ତୁ ଯା' । ମାଉସୀ ଫେର ସନ୍ଧ ଅନ୍ଧାରରେ ହଇରାଣ ହେବେ ? ଘରକୁ ଗଲାବେଳେ କୁରୁଡାଟି ନେଇଯିବ ମାଉସି !

କୁସୁମ—ହଁ ମ, ଥାଉ । ମୁଁ ଆସିକରି ନେବ । ତୁ ଖନ୍ଧାଘରକୁ ଯା ବଡ଼ବୋହୂ ! ଝିଅ ଏକୁଟିଆ ଅଛି ।

ବୋଉ—ହଉ ତେବେ । ( ସପ ଗୋଟାଇଲେ । କୁସୁମ ଓ ଚୂନା ଦାଣ୍ଡକୁ ଗଲେ । )

———

## ତୃତୀୟ ଦୃଶ୍ୟ

( ଡାକ୍ତର ଖାନା କଟେଜ—ରୋଗ ଶଯ୍ୟାରେ ଶୋଇଥିଲେ ରମେଶ । ତାଙ୍କ ହାତ ଓ ମୁଣ୍ଡରେ ବ୍ୟାଣ୍ଡେଜ୍ ଭିଡ଼ାହୋଇଛି । ମୁଣ୍ଡ ପାଖରେ ଖଣ୍ଡିଏ ଚୌକି । ରମେଶଙ୍କ ସ୍ତ୍ରୀ ଲୀଳା ଓ ନର୍ସ ଠିଆହୋଇ କଥାବାର୍ତ୍ତା କରୁଛନ୍ତି । )

ନର୍ସ—ଜଣେ ରୋଗୀଙ୍କ ପାଖରେ ତ ସବୁବେଳେ ରହିବା ଆମମାନଙ୍କ ପକ୍ଷେ ସମ୍ଭବ ନୁହେଁ । କେତେ ରୋଗୀଙ୍କି ଦେଖିବାକୁ ହେବ । କେହି ନ ଥିଲେ ପାଖରେ । ମୁଁ ବାଧ୍ୟ ହୋଇ ପ୍ରାୟ ଘଣ୍ଟାଏ କାଳ ରହିଛି । ସପ୍ତାହକ ପରେ ଆଜ ତାଙ୍କୁ ଟିକଏ ନିଦ ହୋଇଛି । ତଥାପି, ବେଶି ସମୟ ସେ ଶୋଇରହିବେ ନାହିଁ । ଆପଣ ଟିକଏ ବସନ୍ତୁ ( ଚୌକିଟି ଘୁଞ୍ଚାଇଦେଲେ ) ଉଠି ପଡ଼ିବେ ସେ ଏଇନେ ।

ଲୀଳା—(ହାତ ଘଡ଼ି ଦେଖି ) ଆପତ୍ତି ନ ଥିଲା ମୋର । କିନ୍ତୁ ଜଣେ ବନ୍ଧୁଙ୍କୁ ମୁଁ କଥା ଦେଇଛି, ଠିକ୍ ୫ ଟାରେ ତାଙ୍କର ଘ'ର ନିମନ୍ତ୍ରଣ । ଉପାୟ ନାହିଁ ରହିବାକୁ ।

ନର୍ସ—କିନ୍ତୁ ନିଦରୁ ଉଠାଇବା ତ ଠିକ୍ ହେବନାହିଁ । ଡାକ୍ତର ମିଶ୍ର ବାର ବାର କହିଛନ୍ତି, ରମେଶବାବୁଙ୍କ ନିଦରେ ଯେମିତି କିଛି ବ୍ୟାଘାତ ନ ହୁଏ । ରୋଗୀ ସେ, ଆମେମାନେ ଯେତେ ହେଲେ ପରଲୋକ ! ଆପଣ ଟିକଏ ଥିଲେ ତାଙ୍କର ମନ

ପରିବର୍ତ୍ତନ ହେବ । ବରାବର ଜଣେ କେହି ତାଙ୍କ ପାଖେ ପାଖେ ରହିବା ଉଚିତ । କେତେବେଳେ କଅଣ ଲୋଡ଼ିବେ ! ଆପଣ ତାଙ୍କର ସ୍ତ୍ରୀ । କେତେ ସାନ୍ତ୍ୱନା ମିଳିବ ତାଙ୍କୁ, ଆପଣ ଥିଲେ ।

ଲୀଳା—ସେ ତ ଠିକ୍ କଥା; କିନ୍ତୁ ମୁଁ ନିରୁପାୟ । ବନ୍ଧୁର ନିମନ୍ତ୍ରଣ ନ ଗଲେ ନ ଚଳେ ।

ନର୍ସ—ଆପଣଙ୍କର ନ ଗଲେ ନ ଚଳେ ସତ, ମୋର ଯେ ଏଣେ ରହିଲେ ଚଳୁନାହିଁ । ଟିକିଏ ଆପଣ ବସି ଯାଆନ୍ତୁ । ନିଦ ଭାଙ୍ଗିବା ବେଳ ହୋଇଗଲାଣି ତାଙ୍କର ।

ଲୀଳା—(ପୁଣି ଘଡ଼ି ଦେଖି) ନା, ଡେର ଡେରି ହୋଇଗଲାଣି ମୋର ! ନିଦ ଭାଙ୍ଗିଲେ ଆପଣ ଟିକିଏ ତାଙ୍କୁ କହିଦେବେ, ମୁଁ ଆସିଥିଲି ବୋଲି ।

( ନେପଥ୍ୟରୁ ମୋଟର ହର୍ଣ୍ଣ ଶୁଭିଲା )

ହେଇ ଶୁଣନ୍ତୁ । ମୋର ଅପେକ୍ଷା କରୁଛନ୍ତି ସେମାନେ । ହବ ତ କାଲି କେତେବେଳେ ଆସିବି ।

ନର୍ସ—ଆପଣ କିନ୍ତୁ ଆଉ କିଛି ସମୟ ରହିପାରିଥିଲେ ଭଲ ହୋଇଥାଆନ୍ତା ।

ଲୀଳା—( ପୁଣି ଘଡ଼ିକି ଦେଖି ) ନା, ଆପଣ ଦାୟିତ୍ୱଟା ବୁଝୁ-ନାହାନ୍ତି ଦେଖୁଛି । ( ଭ୍ୟାନିଟି ବ୍ୟାଗ ଖୋଲି ) ଏଇ ନିଅନ୍ତୁ ଆପଣଙ୍କର ପାରିଶ୍ରମିକ । ( ଖଣ୍ଡେ ଦଶ ଟଙ୍କିଆ ନୋଟ ବଢ଼ାଇଲେ )

( ନେପଥ୍ୟରୁ ଶୁଣାଗଲା—ସିଷ୍ଟର ! )

ନର୍ସ—ହିଁ, ଡାକ୍ତର ବାବୁ ! (ଲୀଳାକୁ ଘୃଣାଦୃଷ୍ଟିରେ ଚାହିଁ ) ରଖନ୍ତୁ ଆପଣଙ୍କ ଟଙ୍କା । ଧନ୍ୟବାଦ ! ମୋର ଅନ୍ୟ ଦାୟିତ୍ୱ ଅଛି ।

ଆପଣ ରମେଶ ବାବୁଙ୍କ ସ୍ତ୍ରୀ ! ତାଙ୍କ ରୋଗ ଶଯ୍ୟାରେ ଆପଣଙ୍କ ଦାୟିତ୍ୱ ମୋ ଅପେକ୍ଷା ଅଧିକ ବୋଲି ମୋର ଧାରଣା । ଦାୟିତ୍ୱ ବୁଝାଇବା ପୂର୍ବରୁ ଦାୟିତ୍ୱ ବୁଝିବା ଉଚିତ ବୋଧ ହୁଏ । ସେଇଟି ଚୌକି ଅଛି । ( ଯାଉ ଯାଉ ଚୌକି ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି ଚାଲିଗଲେ )

ଲୀଳା—ଅଭଦ୍ର ! ସଭ୍ୟତାର ବହୁ ଦୂରରେ । ( ପୁଣି ହର୍ଣ୍ଣ ଶୁଭିଲା) ନାଃ, ଅସମ୍ଭବ ! (ଚାଲିଗଲେ) ।

(ଅଳ୍ପ ସମୟ ପରେ ରମେଶଙ୍କ ନିଦ ଭାଙ୍ଗିଲା । ସେ ବ୍ୟସ୍ତ ହୋଇ ଚାରି ଆଡ଼କୁ ଚାହିଁଲେ)

ରମେଶ—ଓଃ ! ଓଃ !

(ହାତରେ ଜଳଖିଆ ଡବା ନେଇ ପ୍ରବେଶ କଲେ ବଡ଼ବୋହୂ ଓ ଶାନ୍ତ )

ବୋଉ—କଅଣ ହେଲା ରମେଶ । କାହିଁକି ଏମିତି ବ୍ୟସ୍ତ ହେଉଛ ।

ରମେଶ—ଭାରି ଶୋଷ ହେଉଛି । ସେ କଅଣ ବଡ଼ବୋହୂ ।

( ଶାନ୍ତ ସୁରେଇରୁ ଗ୍ଲାସରେ ପାଣି ଭରିତ କରୁଛି )

ବୋଉ—କିଛି ନାଇଁ ! ଟିକିଏ ଜଳଖିଆ । କିଛି ତ ମୁହଁରେ ଦେଉ-ନାହଁ । ତୁମେ ମାଲପୁଆକୁ ସୁଖ ପାଅ । ଶାନ୍ତ ଦକ୍ଷିଣ ମାଲପୁଆ ତିଆରି କରିଥିଲା ଯେ···

ରମେଶ—ଶାନ୍ତ ! ସେ ଫେର କେଉଁ ଦିନ ମାଲପୁଆ ତିଆରି କରି ଜାଣିଲାଣି । ହଁ, ନୂଆବୋହୂ ! ସେ ତ ତମରି ହାତର ଗଢ଼ା । କେତେଦିନୁଁ ତାକୁ ଦେଖିନାହିଁ । ଆସିଲା, ତାକୁ ଟିକିଏ ମାଙ୍ଗରେ ଆଣିଲ ନାହିଁ ।

( ଶାନ୍ତ ପାଣି ଗ୍ଲାସ ନେଇ ଆସିଛି )

ବୋଉ—ମୋ ଆସିଚ ପରା ! କହିଲି ଦାଦାଙ୍କୁ ଟିକିଏ ଦେଖି ଆସିବାକୁ ।

ରମେଶ—ଓ; ଆସିଛୁ, ଆସିଛୁ ସେ ! କାହିଁ ?

ଶାନ୍ତ—( ପାଣି ଗ୍ଲାସ ଧରି ) ପାଣି ! (ରମେଶ ମୁଣ୍ଡ ପାଖେ ସେ ଥିଲା )

ରମେଶ—ତୁ ପାଣି ଆଣିଚୁ ମା ! ( ମୁଣ୍ଡ ଉଠାଇ ଚାହିଁ ) ଦେ, ଦେ; ମା ! ପାଣି ଦେ ।

ବୋଉ—( ଶାନ୍ତ ହାତରୁ ଗ୍ଲାସଟା ଶୀଘ୍ର ନେଇଯାଇ ) ସେମିତି ଶୋଇକରି ପିଇ ପାରିବ ଗ୍ଲାସରୁ ? ଫିଡ଼ିଙ୍ଗ୍ କପ୍ (ଶାନ୍ତ କପ୍ ଆଣିଦେଲା । ବଡ଼ ବୋହୂ ଗ୍ଲାସରେ ସେଥିରୁ ପାଣି ଢାଳି ରମେଶଙ୍କୁ ଦେଲେ । ଶାନ୍ତ ରମେଶଙ୍କ ପାଦ ଚପି ବସିଲା )

ରମେଶ—ଆରେ, ଥାଉ ଥାଉ । ତୁ କଅଣ ଘଷିଦେବୁ ! ଆ, ମୋ ପାଖରେ ଟିକଏ ବସ୍ । ( ହାତ ବଢ଼ାଇ ) ଆ, ଏଠିକି ଆସିଲୁ ।

ବୋଉ—ଥାଉ, ଦେଉ ଟିକଏ । ବାପର ସେବା କରିବାକୁ ତ କାଳ ପଡ଼ିଲା ନାହିଁ । ଝିଅ ପିଲା, ସେବା ତାଙ୍କର ଧର୍ମ । ଆଜଠୁ ସେବାଶୁଶ୍ରୂଷା ନ ଶିଖିଲେ···( ପାଣି ପିଆଇବାକୁ ଗଲେ ) ।

ଶାନ୍ତ—( ବୋଉର ହାତ ଧରି ) ବୋଉ ! ଖାଲି ପାଣିଗୁଡ଼ା ଦଉଚୁ ବାବାଙ୍କୁ ?

ବୋଉ—ହଁ ମାଆ, ( ହାତ ଫେରାଇ ଆଣି ) ଭଲ ମନେ ପକାଇ ଦେଲୁ ତୁ । (ରମେଶଙ୍କ ପ୍ରତି) ଖାଲି ପାଣି ପିଅ ନାହିଁ, ଖଣ୍ଡିଏ ମାଲପୁଆ ଦିଏଁ; ଗରମ ଅଛି । (କପ୍ ରଖିଦେଇ ଜଳଖିଆ ଡବା ଆଣି ଫିଟାଇ, ମାଲପୁଆ ଖଣ୍ଡେ କାଢ଼ି) ଆଁ କର, ଖୁଆଇ ଦିଏଁ ।

(ରମେଶ ମୁହଁ ଫିଟାଇଲେ । ବଡ଼ବୋହୂ ତାଙ୍କୁ ମାଲପୁଆ ଖୁଆଇ ଦେଲେ )

ରମେଶ—(ଥରେ ଖାଇସାରି, ବଡ଼ ବୋହୂଙ୍କ ହାତ ଧରି ପକାଇ) ନୂଆ ବୋଉ !

( କାନ୍ଦ ପକାଇଲେ । କଥା ଭଙ୍ଗାଭଙ୍ଗା ଶୁଭିଲା )

ବୋଉ—( କାନରେ ଲୁହ ପୋଛି ଦେଉ ଦେଉ ) ଛି, ଛି, ଏ କଅଣ ? ଆଜଯାଏ ତୁମର ସେ ପିଲାପଣିଆଁ ଗଲା ନାହିଁ ?

ରମେଶ—ସେଇ ପିଲାଦିନର କଥା ଆଜି ମନେ ପଡ଼ିଯାଉଛି, ନୂଆବୋଉ ! ଏଇମିତି···

ବୋଉ—( ବାଧାଦେଇ ) ଥାଉ ରମେଶ, ବହୁତ ଦିନର ପୁରୁଣା କଥାସବୁ । ତାକୁ ଆଉ ଆଜି ମନେ ପକାଇ···(ପୁଣି ଖୁଆଇ ଦେଲେ । ନର୍ସ ବଡ଼ବୋହୂଙ୍କ ପଛପଟରୁ ଆସିଲେ )

ନର୍ସ—ନମସ୍କାର !

ରମେଶ—ଓ, ନିସ୍କାର !

ନର୍ସ—ଆଜ୍ଞା !

ରମେଶ—ଭାରି ଶୋଷ ହେଉଥିଲା । ନୂଆବୋଉ କହିଲେ ଖାଲି ପାଣିଗୁଡ଼ା······ ।

ନର୍ସ—ଠିକ୍ କଥା ତ କହିଛନ୍ତି ସେ । ମୁଁ ମନେ କରିଥିଲି······

( ହସିଲେ ଅଳ୍ପ )

ବୋଉ—କଅଣ ମନେ କରିଥିଲେ ଭଉଣୀ ! ଅନ୍ୟ ଲୋକଙ୍କ ପାଇଁ ସିନା ରମେଶ ବାବୁ, ଡେପୋଟୀ ବାବୁ । ମୋ ଆଖିକି ତ ସେ ସେଇ ରମେଶ, ସେଇ ଅଳିଅଳି ଅବୁଝା ପିଲା (ଗଳା ବୋକି ଆସିଲା, ସ୍ନେହର ଆତିଶଯ୍ୟରେ । ଆଖି ଦିଓଟି ଲୁହ ଛଳ ଛଳ ହୋଇ ଆସିଲା । ସେ ମୁହଁ ଫେରାଇ ଆଖି ପୋଛିନେଲେ । )

ନର୍ସ—ଦେଖୁଛ ତ ମୁଁ ସେଇଆ । ବାକି ମୁଁ ସେକଥା କହୁ ନ ଥିଲି ।

ବୋଉ—କଅଣ ଆଉ ?

( କହୁ କହୁ ଖୁଆଉ ଥାଆନ୍ତି )

ନର୍ସ—ମୁଁ ମନେ କରିଥିଲି ଆପଣ ବସି ନାହାନ୍ତି—ସେ···

ରମେଶ—ସେ···କିଏ ?

ନର୍ସ—ଟିକିଏ ଆଗରୁ ଆପଣଙ୍କ ଆଖି ଲାଗି ଆସିଥିଲା, ସେତେବେଳେ । ଲୀଳା ଦେଖା ଆସିଥିଲେ ।

ବୋଉ—ସାନବୋହୂ ? କୁଆଡ଼େ ଗଲେ ? ମୁଁ ପହଞ୍ଚିଲି ବେଳକୁ ତ କାଇଁ···

ନର୍ସ—ମୁଁ ତାଙ୍କୁ କହିଲି, ବାବୁ ତ ବେଶି ବେଳଯାଏ ଶୋଉ ନାହାନ୍ତି, ଟିକିଏ ଅପେକ୍ଷା କରନ୍ତୁ ।

ବୋଉ—ସେଇଠୁ ?

ନର୍ସ—ତା ପରେ ଆଉ କିଛି କଥା ନ ଶୁଣିଲେ ଭଲ ।

ରମେଶ—ନାଇଁ, ନାଇଁ, କହନ୍ତୁ ନା ସବୁ ।

ନର୍ସ—( ମୁରୁକି ହସି, କୁଣ୍ଠିତା ହେବାପରି ) ଆପଣ ତ ଜାଣନ୍ତି, ଆମେମାନେ ଜଣେ ରୋଗୀଙ୍କ ପାଖେ ବହୁତ ବେଳ ରହି ପାରିବୁଁ ନାହିଁ । ସାରା ଓ୍ୱାର୍ଡ଼ଟାକୁ ଦେଖିବାକୁ ପଡ଼େ ମତେ ।

ରମେଶ—ତେବେକେ ତ ବହୁତ ବେଳ ଆପଣଙ୍କୁ ମୋପାଖରେ ଦେଖେଁ ।

ନର୍ସ—ହିଁ, ଜଣେ ରୋଗୀଙ୍କୁ ଇଞ୍ଜେକ୍‌ସନ୍ ଦେବାର ବେଳ ହୋଇଯାଇଥିଲା । ଡାକ୍ତର ବାବୁ ବି ସେତିକିବେଳେ ଡାକିଲେ ମୋତେ । ତା ଛଡ଼ା ସେ ଆସି ପହଞ୍ଚିଥାନ୍ତି, ସ୍ୱାମୀ-ସ୍ତ୍ରୀ ।

ଆପଣ ପୁଣି ରୋଗ ଶଯ୍ୟାରେ । ମୁଁ ବି ଟିକଏ ଦୂରେଇ ହୋଇ ଯିବାଟାକୁ ପସନ୍ଦ କଲି ।

( ସମସ୍ତେ ଟିକଏ ନୀରବ ରହିଲେ )

ରମେଶ—( ଦୀର୍ଘଶ୍ୱାସ ପକାଇ ) ହିଁ, ସ୍ତ୍ରୀ !

ବୋଉ—ନିହାତି ପିଲାଟା ସେ । ସଂସାର କଥା କଅଣ ଜାଣିଲାଣି ?

ରମେଶ—ରହ, ନୂଆବୋଉ ! ହିଁ, ସିଷ୍ଟର ! ତା ପରେ ?

ନର୍ସ—ତାଙ୍କର ଜଣେ କଏ ବନ୍ଧୁ ତାଙ୍କୁ ମୋଟରରେ ଅପେକ୍ଷା କରୁଥିଲେ । ସେଥିପାଇଁ······

ରମେଶ—ବନ୍ଧୁ ତାଙ୍କୁ ମୋଟରରେ ଅପେକ୍ଷା କରୁଥିଲେ ! ସେଥି-ପାଇଁ ସେ······

ନର୍ସ—ମୁଁ କହିଲି ଟିକଏ ରୋଗୀ ପାଖରେ ରହନ୍ତୁ । ( ହସି ହସି ) ସେ ମୋତେ ପଇସାର ମାପ୍ପା ଦେଖାଉଥିଲେ । ହୁସ୍ – ହୁସ୍ ।

ରମେଶ—ଓଃ ! ମଣିଷ ଆଜି କେତେ ତଳକୁ ଯାଇପାରେ, ନୂଆ ବୋଉ ! ତୁମେ ବି ଶିକ୍ଷିତା ! ତୁମେ ବି ତ ଥିଲ ଏକ ଖାନଦାନ ଘର ଝିଅ । ଲୀଳା ବଡ଼ ପାଠୋଇ; କିନ୍ତୁ ନୂଆ ବୋଉ ! ଖାଲି ଶିକ୍ଷା ପାଇଲେ, କି ଦିଟା ଗୋଟେ ଡିଗ୍ରୀ ନା ପଛରେ ଲଗିଲେ ମଣିଷ, ମଣିଷ ହୁଏ ନାହିଁ ।• ଶିକ୍ଷା ସାଙ୍ଗରେ ଦୀକ୍ଷା ଦରକାର । ଶିକ୍ଷାଟା ଅଲଗା । ଦୀକ୍ଷାଟା ଅଲଗା । ଘୋଷିକରି ବିଦ୍ୟାଳୟର ଶିକ୍ଷା ହାସଲ କରାଯାଇପାରେ, କିନ୍ତୁ ଦୀକ୍ଷା—ଘୋଷା ପାଠ ନୁହେ । ସେଇଟା ପରମ୍ପରା—ବୁନିଆଦ । ଯୋଗ୍ୟ ସେଇ—ଯାହାର ଶିକ୍ଷା ଅଛି, ଦୀକ୍ଷା ଅଛି । ଯେଉଁଠି ଏ ଦୁହେଁ ମିଶିଯାଆନ୍ତି, ସେଇଠି ଗଢ଼ି ହୁଅନ୍ତି ଆଦର୍ଶ ମନୁଷ୍ୟ, ସେଇଠି ହୁଏ ଗଙ୍ଗା ଯମୁନାର ସଙ୍ଗମ ।

ବୋଉ—ଶୁନ ହୁଅ ରମେଶ । ବହୁତ ବକ୍ ବକ୍ ହେଲଣି ତୁମେ । ସେଥିର ଦଣ୍ଡ ସ୍ୱରୂପ ତୁମକୁ ଆଜିଖଣ୍ଡେ ମାଲପୂଆ ଖାଇ-ବାକୁ ପଡ଼ିବ । ଶାନ୍ତ !

ଶାନ୍ତ—ନଉଚ ବୋଉ । (ନେଇ ଆସି ବୋଉଙ୍କୁ ଦେଲା) ହଁ, ବୋଉ ! ଯେବେ ତୋ ଭାଗ ଗଲା । ଦାଦା ମୋ ଭାଗ ନେବେ ନାହିଁ ? ଏ ଖଣ୍ଡିକ ମୋ ପାଇଁ······(ଆଉ ଖଣ୍ଡିଏ ଧରି) ନେ ଖୁଆଇଦେ ।

ରମେଶ—ନୂଆବୋଉ । ଗର୍ଭରେ ଯାହାଙ୍କୁ ଧରିଛ ସେ କଅଣ ଅମୂଲ୍ୟ ରତ୍ନ ହୋଇ ନ ବାହାରିବ ? ( ଟିକିଏ ନୀରବ ରହି) ହଁ ମୋର ଭାଗ ତ ପୁଣି ଶାନ୍ତର ବାପା—ଯୋଉ ଭାଗ ଆପଣା ପେଟକୁ ନ ଖାଇ ମୋତେ······

ବୋଉ—ରମେଶ । ତୁମେ ଦିନକୁ ଦିନ ପିଲାରୁ ପିଲା ହୋଇ ଯାଉଚ ଦେଖୁଛି ! ଯେବେ କଅଣ ? ତୁମେ ଜଣେ ମାଜିଷ୍ଟ୍ରେଟ ନା ? ଭୁଲି ଯାଉଛ ସେ କଥା !

ରମେଶ—ନା, ତୁମେ ଭୁଲି ଯାଉଛ, ନୂଆବୋଉ । ସେଇ ମାଜି-ଷ୍ଟ୍ରେଟ ଯେ ତୁମରି ହାତ ଗଢ଼ା ।

ନର୍ସ—ଝିଅ ମାଲପୁଆଟି ଧରି ଠିଆ ହୋଇଛି ପରା ! ଅଗେ ସେ ଖଣ୍ଡି ଖାଇ ଦିଅନ୍ତୁ ।

ରମେଶ—ହଁ; ହ । ସେ ଆଉ କଅଣ ସବୁ କହିଗଲେ ?

ନର୍ସ—ଓ, ଆପଣ ପୁଣି ଆପଣଙ୍କ ସ୍ତ୍ରୀଙ୍କ କଥା ପଚାରୁଛନ୍ତି ? ହଁ, ମୁଁ ବି ପାଶୋର ପକାଇଥିଲି । ସେ ଆସିଥିଲେ । ଗଲାବେଳେ କହିଗଲେ କି ସୁବିଧା ହେଲେ କାଲି ପୁଣି କେତେବେଳେ ଆସିବେ ସେ ।

ରମେଶ—( ଗମ୍ଭୀର ଭାବରେ ) ହଁ—ସୁବିଧା ହେଲେ······

ବୋଉ—ରମେଶ ! ଥରେ କହିଛି ପରା ! ସେଇଟା ନିହାତି ପିଲାଟା । ଦୁନିଆଁ ବେଭାରର କଅଣ ସେ ଜାଣେ, ନା ବୁଝେ ? ତା'ର କଥାକୁ ବସି ଗଣୁକଲେ ଚଳିବ ? ଏତେବେଳେ ତୁମର ସେ ସବୁ କଥା ଧରି ବସିବାର ନୁହେ । ଶାନ୍ତ ! ଦେ, ଆଣ । ( ଶାନ୍ତ ମାଲପୁଆ ଦେଲା ) ଆଁ କର । ରମେଶ ବଢ଼ି ବୋଉଙ୍କ ହାତ ଧରିପକାଇଲେ ) ଛାଡ଼, ହାତ ଛାଡ଼ । ସେଥି କି ଜିଦ ! ମୋ ପାଖେ ତୁମ ମାଜିଷ୍ଟ୍ରେଟ ପଣିଆ ତ ଦୂରର କଥା, ତୁମେ ରମେଶ ବାବୁ ବି ହୋଇପାରିଲ ନାହିଁ । ମୁଁ ବଞ୍ଚିଥିବା ଯାକ ତୁମେ ମୋର ସେଇ ରମେଶ—ରମେଶରେ ହିଁ ରହିଚ—ରହିବ, ରହିଗଲ । ଛାଡ଼; ହାତ ଛାଡ଼ । ଆଁ କର ।

ରମେଶ—ଖାଇବି, ନୂଆବୋଉ ! ବାକି ଗୋଟିଏ କଥା—

ବୋଉ—କି କଥା ? ଠାକୁଆ କୁମର ନା କଲୁଷି ବେଣ୍ଟ ? ତୁମକୁ କଥା କହି ଭଣ୍ଡାଇ ଖୋଇବା କାଳ କଅଣ ଆଉ ଆଜି ଅଛି ? ଆଗେ ବୋଲ ମାନ ସୁନାପୁଅଟି ପରି ଖାଇସାର । ତା ପରେ ତୁମ କଥା ମୁଁ ଶୁଣିବି ।

ରମେଶ—ଶୁଣିବ ତ ?

ବୋଉ—କହିଲି ପରା ତୁମେ ଆଗ ଖାଇସାର ।

ରମେଶ—ନୂଆବୋଉ ! ହାତ ତ ଭାଙ୍ଗିଯାଇଥିଲା । ପାଣୋରି ପାରିବ ନାହିଁ ଡାକ୍ତର ମିଶ୍ରଙ୍କ ଚକେଷ୍ଟା । ଏ ଜୀବନରେ ସେ ଋଣ ଶୁଝିବା ସମ୍ଭବ ହେବ ନାହିଁ । ଯାହା କରିବାର ତାଠୁଁ ଢେର ଢେର ଅଧିକ କରିଛନ୍ତି ସେ । ଏଥର ଖାଲି କିଛି ଦିନ ବିଶ୍ରାମ ନେଲେ ହେଲା । ଆଉ ଏଠି, ଏଇ କଟେଜରେ

ପଡ଼ି ରହିବାକୁ ଆଦୌ ସୁଖ ଲାଗୁନାହିଁ ମୋତେ । ଆମ ଘରକୁ ଫେରିଗଲେ···

ବୋଉ—ଆଚ୍ଛା ହଉ । ଏଇ କଥା ତ । ଏଥିରେ ଖାଇବା ପାଇଁ ଆପତ୍ତିଟା କେଉଁଠି ଶୁଣେ ? ଡାକ୍ତର ବାବୁଙ୍କ ସଙ୍ଗେ ପରାମର୍ଶ କର । ସେ ଯଦି କହନ୍ତି ତ ଘରକୁ ଯିବ । ତୁମେ କଅଣ କହୁଛ ଭଉଣି ! ରମେଶ ଘରକୁ ଯାଇପାରନ୍ତି ?

ନର୍ସ—ହଁ, ଯାଇ ପାରନ୍ତି । ତେବେ ଏଠି ଡାକ୍ତର ଖାନାର ସବୁ ସୁବିଧା ଯଦି ତାଙ୍କୁ ସେଠି ମିଳେ, ତେବେ ଯିନା । ବିଛଣାରୁ ତ ଉଠିବାକୁ ମନା ।

ରମେଶ—ସିଷ୍ଟାର । ମୋର ସବୁ ସୁବିଧା ହୋଇଯିବ ।

ନର୍ସ—ଆପଣ ତ ସବୁ ଦେଖୁଛନ୍ତି; ଜାଣୁଛନ୍ତି । ଯେବେ ନିଜେ ମନେ କରୁଛନ୍ତି ସବୁ କଥାର ସୁବିଧା ହେବ, ଆପଣଙ୍କୁ କଷ୍ଟ ହେବ ନାହିଁ, ତେବେ ଡାକ୍ତର ବାବୁ ବୋଧହୁଏ ଆପତ୍ତି କରିବେ ନାହିଁ । ଯାଇ ପାରନ୍ତି । ଟିକିଏ ତାଙ୍କୁ···

ରମେଶ—ବହୁତ କରିଛନ୍ତି ଆପଣ ମୋ ପାଇଁ ସିଷ୍ଟାର ! ବହୁତ କଷ୍ଟ ସହିଛନ୍ତି । ମାଆ ପେଟର ଭଉଣୀ ବି ଏତେ କରନ୍ତା ନାହିଁ । ଦୟାକରି ବାକି ଏତିକ ବି କରିଦିଅନ୍ତୁ ।

ନର୍ସ—କଅଣ କରିବି, କହନ୍ତୁ ।

ରମେଶ—ଟିକିଏ ଡାକ୍ତର ମିଶ୍ରଙ୍କୁ କହି ମୋ ଯିବାର ଅନୁମତିଟା କରେଇ ଦିଅନ୍ତୁ ।

ନର୍ସ—(ହସି) ଓ, ଏଇ କଥା ତ ! ସେ ତ ଏଇଲେ ମେଡ଼ିକାଲରେ ଥିବେ । ଆଚ୍ଛା, ମୁଁ ଦେଖେଁ । (ଉଠିଲେ)

ରମେଶ—ହଁ, ଆଉ ଗୋଟିଏ କଥା । ତା ସଙ୍ଗେ ଟିକିଏ ଆମ୍ବୁଲାନ୍‌ସର ବ୍ୟବସ୍ଥାଟି ବି ଦେଖିବେ ।

ନର୍ମ—ଅଚ୍ଛା ( ଗ୍ଭଲଗଲେ ) ।

ବୋଉ—ହେଇଗଲା ତ, ଆଉ କଅଣ ? ଏଥର ଖାଅ ।

ଶାନ୍ତ—ଦାଦାଙ୍କର ସବୁ ଲୁଗାପଟା ଠିକ୍ କରି ରଖିବ ବୋଉ ।

ବୋଉ—ଭଲକଥା, ତୁ ପାରିବୁ ତ ?

ଶାନ୍ତ—ଉଁଃ, ଏଲତକ ଆଉ କରିପାରିବ ନାହିଁ ?

ରମେଶ—ସେ ସବୁ କରିପାରିବ ନାଆବୋଉ ! କାହିଁକି ତାକୁ ସେ କଥା ଆଉ ପଚ୍ଚରୁଛ ?

ବୋଉ—ତେବେ ଯା । ସେ ଘରେ କଅଣ କଅଣ ଅଛି, ସବୁ ସଜାଡ଼ି ଦେ । (ଶାନ୍ତ ଗ୍ଭଲଗଲା) ଆହା, ଗୋଟେ ବଡ଼ କାମ ତ ବାକି ରହିଗଲା; ଉଁଃ ।

ରମେଶ—କି କାମ ଆଉ ?

ବୋଉ—ଆଚ୍ଛା କଥା ଲ ! ତୁମେ ଘରକୁ ଯିବ ! ଆଗରୁ ଖବରଟେ ଦିଆଯିବ ନାହିଁ ? ତମ ଯିବା କଥା ଶୁଣି ସାନବୋହୂ ତ ଖୁସିରେ ନାଚିବ ! ତା ଗୋଡ଼ ହାତ ଆଉ ତଳେ ଲାଗିବ ନାହିଁ ! ଖବର ପାଇଲେ ସେ ଆଉ ଏଠିକି ଦଉଡ଼ି ନ ଆସି ରହୁଛି ?

ରମେଶ—ନା, ନା, ଦର୍କାର ନାହିଁ ।

ବୋଉ—ଉଁ, କଅଣ ଦର୍କାର ନାହିଁ ? ଏ କି କଥା ? ତମ ଯିବା ଖବର ତାକୁ ଦିଆହେବ ନାହିଁ ? ତାକୁ ଦେବା ଉଚିତ, ତା ବାପାଙ୍କୁ ଦେବା ଉଚିତ । ସେମାନେ କେତେ ଖୁସି ହେବେ ।

ରମେଶ—କହିଲ ପରା ? ଦର୍କାର ନାହିଁ । ମୁଁ ଆମ ଘରକୁ ଯିବି । ଏଥିପାଇଁ ଭଲା ସେମାନଙ୍କୁ ଖବର ଦେବା କି

ଆବଶ୍ୟକ ? ନୂଆବୋଉ ! ଗୋଟେ କଥା ମନେ ଅଛି ?
—ଭାଇ ବରବର କହନ୍ତି ।

ବୋଉ—କଅଣ ?

ରମେଶ—ଭଗବାନ ଯାହା କରନ୍ତି, ସବୁ ପ୍ରାଣୀର ମଙ୍ଗଳ ପାଇଁ ।

ବୋଉ—ଥରେ କାହିଁକି । ଏ କଥା ତ ଶହେ ଥର, ହଜାର ଥର ସତ । ମୁଁ ତ ଅନେକ ଲକ୍ଷ୍ୟ କରିଛି ।

ରମେଶ—ମୁଁ ତାର ମର୍ମ ବୁଝି ନ ଥିଲି ? କଥାଟା ଏତେଦିନ ପରେ ସେତେବେଳେ ବାହାରି ଯାଉଥିଲା । ମୁଁ ବିଶ୍ୱାସ ବି କରୁ ନ ଥିଲି । ଏହି ମୋଟର ଦୁର୍ଘଟଣା ମୋର ଆଖି ଖୋଲି ଦେଲା ନୂଆବୋଉ ! ମୋର ଚେତନା ଆସିଲା । ଚହ୍ନିଲି ଦୁନିଆଁକୁ । ସ୍ୱପ୍ନ ମୋର ଭାଙ୍ଗିଗଲା । ମୁଁ ରକ୍ତକୁ ପର ବୋଲି ଭାବୁଥିଲି । ବଦଳିଗଲା ମୋର ଆଖି ଆଗର ଦୁନିଆଁ ।

ବୋଉ—ତୁମେ ପାଗଳ ହେଲ ନା କଅଣ । ମୁଁ ତୁମକୁ ଖାଇବାକୁ କହିଲି । ନ ଖାଇବାର ଏ ଗୋଟେ ଫେପେରା ତୁମର !

ରମେଶ—ଘରକୁ ଗଲେ ଯାଇ ଖାଇବି । ମନବୋଧ କରି ଖାଇବି । କେତେ ଦିନର ଭୋକ ମୋର ମରିବ ।

ବୋଉ—ଏ ପୁଣି ଗୋଟେ କି ଜିଦ୍ ତମର ? ପିଲାଙ୍କ ଆଳି ପରି ତୁମେ ଝୁଙ୍କ ଧରି ବସିଛ ? ଦେଖୁଛି ତୁମେ ସତରେ ସେ ପିଲାକାଳର ରମେଶ ! ମୁଁ ଭାବିଥିଲି ବଡ଼ ହେଲ, ବୁଦ୍ଧି ହେବଣି, ବଦଳି ଯାଇଥିବ ବୋଲି ।

ରମେଶ—ହିଁ ବଦଳି ଯାଇଥିଲି । ସତ କହୁଛି ନୂଆବୋଉ, ମୁଁ ବଦଳି ଯାଇଥିଲି । ଏହି ମୋଟର ଦୁର୍ଘଟଣା ତୁମ ରମେଶକୁ ପୁଣି ସିଧାବାଟକୁ ଆଣିଲା । ମୋତେ ଆମ ଘରକୁ ନେଇଗଲା ।

ବୋଉ—କେତେଥର ସେଇକଥା ହୋହରେଇ, ହୋହରେଇ କହୁଚ ତୁମେ ! ସିଷ୍ଟର ଆସିଲେ ତ ଯିବ ? ଏଇଥି ପାଇଁ ଏତେ ତରତର କାହିଁକି ? ଘରକୁ ତ ଖବର ଦେବାକୁ ମନା କଲ । ସେ ବ ଭଲକଥା । ସାନବୋହୂ ଜାଣି ନ ଥିବ, ଶୁଣି ନ ଥିବ, ତୁମେ ହଠାତ୍ ଯାଇ ଘରେ ପହଞ୍ଚିଯିବ । ସେ ଯାହା ଭାବି ନ ଥିବ, ଆଶା କରି ନ ଥିବ, ସେଇଆ ପାଇବ । ଘରେ ଆନନ୍ଦ ହୋଇଯିବ ବଡ଼ୁଖ ! ଭଲ ହେବ ।

ରମେଶ—ତୁମେ ଭୁଲ ବୁଝିଛ ନୂଆବୋଉ । ମୁଁ ସେଠିକି ଯିବ ନାହିଁ, ଯିବ ଆମ ଘରକୁ । ମୋ ଜନମ କୋଠାକୁ—ଯେଉଁଠି ତୁମେ କୋଳରେ ଧରି, କାଖରେ ଧରି, ଅଳଝଳ ସବୁ ସହି ମୋତେ ବଡ଼ାଇ ଆଣିଚ, ମଣିଷ କରିଚ, ଆମର ସେଇ ଘରକୁ । ସେଇଠି ମୋତେ ଖୁଆଇ ଦେବ । (ବଡ଼ ବୋହୂଙ୍କ ହାତରେ ଧରିଥିବା ମାଳପୁଆକୁ ଆପଣା ମୁହଁକୁ ନେଇ ଖାଇଲେ । ଆଖି ତାଙ୍କର ଛଳ ଛଳ ହୋଇ ଉଠିଲା । କଥା କହି ପାରିଲେ ନାହିଁ ସେ । )

(ନୂଆବୋଉ ମୁହଁ ଫେରାଇ ଲୁହ ପୋଛିଲେ । କିଛି କଥା କହି ପାରିଲେ ନାହିଁ । )

ରମେଶ—( ପୂର୍ବପରି ଭଙ୍ଗା ଗଳାରେ ) କଅଣ କହୁଚ ନୂଆବୋଉ ! ( ଆଖିରୁ ଲୁହ ଝରି ଆସିଲା, ବୋଉ ତାଙ୍କ କାନରେ ରମେଶଙ୍କ ଲୁହ ପୋଛିଦେଲେ. ନିଜେ କାନ୍ଦି ପକାଇଲେ । )

ନର୍ସ—(ଆସି) ଆଜ୍ଞା ! ଡକ୍ଟର ମିଶ୍ର ରାଜି ହେଲେ । ଆପଣ ଯିବାକୁ ପ୍ରସ୍ତୁତ ହୁଅନ୍ତୁ ।

( ବୋଉ ହାତ ଧୋଇଲେ )

ବୋଉ—କଅଣ ଖୋଜୁଛ, ଭଉଣୀଆ ?

ରମେଶ—କଅଣ ହେବ ? ( ବୋଉଙ୍କ କାନ ଆଣି ଆଖି ଲୁହ ପୋଛୁଲେ )

ଶାନ୍ତ—ସବୁ ଠିକ୍ ହୋଇଗଲା ।

ନର୍ସ—( ବାହାରକୁ ବୁଲିଁ ) ଆମ୍ବୁଲାନ୍ସ ପାଇଁ ବ କହ ଦେଇଛୁ । ଆସିଯିବ ସଙ୍ଗେ ସଙ୍ଗେ ।

ରମେଶ—( ଉଠିବାକୁ ଚେଷ୍ଟାକର ) ନୂଆବୋଉ ।

( ବୋଉ ତାଙ୍କୁ ଉଠାଇ ଆଉଯାଇ ବସାଇଲେ । ରମେଶ ତାଙ୍କ ହାତ ଧର ପକାଇ ବୁହିଁଲେ । ସେତେବେଳକୁ ତାଙ୍କ ଆଖିରୁ ଲୁହ ଝର ପଡ଼ୁଥିଲା । ରମେଶ ତାକୁ ପୋଛୁ ଦେବାକୁ ବସିଲେ । )

ବୋଉ—( ମୁହଁ ଫେରାଇ) ଥାଉ । ( ରମେଶଙ୍କ ମଥା ଆଉଁଷିଲେ)

( ହର୍ଣ୍ଣ ଶୁଭିଲା )

ନର୍ସ—( ମୋଟର ହର୍ଣ୍ଣ ଶୁଣି ) ଭଗବାନ କରନ୍ତୁ, ଏଇ ଆପଣଙ୍କର ଶୁଭଶଙ୍ଖ ହେଉ ।

( ପରଦା ପଡ଼ିଗଲା )

---

କୁଶୀଲବ :—

ପୁରୁଣ ପଣ୍ଡା—ଗ୍ରାମର ପୁରୁଣ ପାଠକ
ଦଳବେହେରୁ—ମାଣିଷୀ ଗଡ଼ର ସର୍ଦ୍ଦାର
ଖୋରଧାର ଇଂରାଜ ଶାସକ
ନାଏବ—ଶାସକଙ୍କ ଉଚ୍ଚ କର୍ମଗୃଷ
ସୁବେଦାର
ବନମାଳୀ
ରଘୁନାଥ— ଗ୍ରାମବାସୀ
ଗୋପୀ
କେଉଟ
ବରକନ୍ଦାଜ—ଦୁଇଜଣ

---

ସଉଷ ମାଆ ବୁଢ଼ୀ

## ପ୍ରଥମ ଦୃଶ୍ୟ

( ମାଣିକ୍ପୀ ଗାଁ ମଝି ଭାଗବତ ଘର । ପୁରାଣ ପଣ୍ଡା ବସି ପୁରାଣ ପଢ଼ୁଥିଲେ । ଗାଁଆର କେତେଜଣ ପୁରାଣ ଶୁଣୁଥିଲେ । )

ପୁରାଣ ପଣ୍ଡା—

ନଗରେ ବସିଅଛି ପ୍ରତାପି କଂସାସୁ
ବେଢ଼ି ରହିଛନ୍ତି ଯେତେ ଅସୁର ବଳ ।
ନାରଦ ମହାମୁନି ହୋଇଲେ ପରବେଶ
ଦେଖି କଂସାସୁର ପୁଛଇ ସନ୍ଦେଶ ।
ଜାଣ ତ ମହାମୁନି ମୋହର ବଳ ଯେତେ
ଜିଣିଲି ବାହୁବଳେ ସ୍ୱରଗ ପରଯନ୍ତେ ।
କଏ ସେ କହ ମୋର ଭଗାରି ଅଛି କାହିଁ
ତୁମ୍ଭେ ତ ତ୍ରିକାଳଜ୍ଞ ଭବିଷ୍ୟ କହ ଗୁହିଁ ।
ନାରଦ କହିଲେ ତୋ ଭଗାରି ଚକ୍ରଧର,
ଜନମ ଲଭିବ ସେ ଯେ ଦେବକୀ ଗର୍ଭର ।
ଏହା ଶୁଣି ଅସୁର କମ୍ପଇ ଥରହର
ରଙ୍ଗ ନୟନୁ ହେଲା ଅଗ୍ନି କ ବାହାର ?
ଭଉଣୀ ଭଣୋଇଙ୍କୁ ଆଣିଲା ଧରାଇ
କହିଲା ରଖିଦିଅ ବନ୍ଦୀଶାଳେ ନେଇ ।
ଦେବକୀ ଗର୍ଭେ ଯେତେ ସନ୍ତାନ ଜନମିବେ
ଗୋଟି ଗୋଟି କରି ସେ ମୋ ହାତେ ନାଶ ଯିବେ ।

କଂସର ଅତ୍ୟାଚ୍ଛର ବଚନେ ନୁହେଁ କହ୍ବ
ଥର ଥର କମ୍ପଇ ଶୁଣି କ ଢନ ମଣ୍ଡା ।
କୋପରେ କଂସାସୁର ମନ୍ତ୍ରୀରେ କହେ ଶ୍ରଇ
ନାରାୟଣର ପୂଜା ମୋ ରାଜ୍ୟେ ହେବ ନାହିଁ ।
ପୂଜା କରିବ ଯେତ୍କ ନ ମାନ ଆଜ୍ଞା ମୋର
ନାଶ କରିବ ନଷ୍ଟେ ସ୍ୱହସ୍ତେ ବଂଶ ତାର ।
ଏମନ୍ତ ଶୁଣି ଭୟେ କମ୍ପଇ ତନପୁର
ହାହା ହାହା ଡାକଲେ ଦେବତା ନାଗ ନର ।
(ହଠାତ୍ ବନମାଳୀ ବୋଲି ଜଣେ ଗାଁଆବାଲା ଭାଗବତ ଟୁଙ୍ଗୀରେ ପହଞ୍ଚିଲ । ତାର ପାଦଠାରୁ ଆଣ୍ଠୁଯାଏ ଧୂଳି । ଆଖିରୁ ଲୁହ ବହିଯାଉଛି । )

ବନମାଳୀ—ଦଳବେହେରା ସାଆନ୍ତ ! କଅଣ ଆଉ ପୁରାଣ ଶୁଣୁଛ ? ସରିଗଲା ଆମ କଥା ।

ଦଳବେହେରା—କଅଣ ? କଥା କ'ଣ କରେ ବନମାଳୀ ! ଏମିତ ଧୂଳି ଧୂଷର, ହେଇଛୁ । କୁଆଡ଼େ ଯାଇଥିଲୁ କ ।

ବନମାଳୀ—ଯିବ ଆଉ କୁଆଡ଼େ ଆଜ୍ଞା । ସହ୍ବା ସୀମା ବଳିଗଲା ଆମର । ହଇ ଏ ଆଜ୍ଞା । ବୋପା ଅଜା ତେପନ ପୁରୁଷରୁ ତ ନିଷ୍କର ଭୂଇଁ ଖାଇଆସିଲୁଁ । ଆଜି ଆମେ କର ଦେବୁ ? ତା'ବ ସହିଲୁଁ । ହଉ ହେଲା ରାଜ ଭାଗ କଥା । ତା ପୁଣି କଉଡ଼ିରେ ହବ ନାହିଁ । କହୁଛ ଟଙ୍କାରେ କର ଆମକୁ ଦିଅ । ଟଙ୍କା ଆମକୁ ମିଳିବ କେଉଁଠୁ । ମୁଁ କଥାଗ୍ରରୁ ବାହୁଡ଼ିଲି ବାଟରେ ମୋତେ ଅଟକାଇ, ଜୁଲମ ! ହେଇଟି ଦେଖ, ନୂଆ ଗାମୁଛାଟାଏ ଫଡ଼ା ଫଡ଼ା (ଚିରା ଗାମୁଛାଟାଏ ଦେଖାଇଲା ) କେଉଁଠି ଥିଲେ ଏ ଅସୁର ପଲ ? ସାତ

ସମୁଦ୍ରର ଡେର ନଈ ପାରହୋଇ ଆମ ମୂଲକରେ ଆସି କଂସାସୁର ହେଉଛନ୍ତି । କଅଣ ଏଥିକ କିଛି ଉପାୟ ନାହିଁ ? ଆମର ତ ମୁଣ୍ଡ ଆପଣ, ପଦେ ପରାମର୍ଶ ଦେଇ ଦେଲେ କି ଯାହା ହବ, ଦେଖାଯିବ ।

ବଳଦେବଦେବ—ଆହେ ବନମାଳ । ଆପଣା ସୁନା ତ ଭେଣ୍ଡି । ବଣିଆ ସଙ୍ଗେ ଚୁକ୍ତି ଧରାଧରି କଲେ ଲାଭ କଅଣ ? କାଠକୁ ଲୁହା କାଟେ । କେମିତି କାଟେ ? ସେଇ କାଠରୁ ଖଣ୍ଡେ ଲୁହା ପେଟରେ ପଶେ ବୋଲି ସିନା !

ରଘୁନାଥ—ସେଇଆ ପରା ଆଜ୍ଞା ! ଆମର ଲୋକେ ତାଙ୍କୁ ଭେଦ ବତାଇ ନ ଥିଲେ ଫିରଙ୍ଗୀ, ନା ତାଙ୍କ ପରି ହଜାର ଗଣ୍ଡା ଆସିଲେ ଆମର କଅଣ କରନ୍ତେ ? କାଲିର ବାବନାଭୂତ ସେଇ ଚକରା, ଆଜି ଯାଇବ ଘର ଦାନା ଖାଇ, ତା ଆଖି ଓଲଟି ଗଲା ? ମୁଣ୍ଡରେ ଖଣ୍ଡେ ନାଲି କନା ଭିଡ଼ି ଦେଲା ବୋଲି ଆଜି ଇନ୍ଦ୍ର, ଚନ୍ଦ୍ର ମାନିବାକୁ ନାହିଁ ସେ ! ପଶ୍ଚିମରାଏ ନାହାନ୍ତି । ଘରେ ତାଙ୍କର ଭୁଆସୁଣୀ ଝିଅ ବୋହୂ । ତାଙ୍କୁ ଆସି ମାଗୁଛି ଖଜଣା । ତୁଣ୍ଡରୁ କି ଅଭାଷା କୁଭାଷା ବାହାରୁଚି । ଏ କୁବାକ କାନରେ ଶୁଣି ଦେହ ଜଳି ଯାଉଛି । ରକ୍ତ ମାଂସ ଶରୀର କେତେ ସହିବ ?

ବଳ—ଆରେ ରଘୁ, ସହିବ ବୋଲି ପରା ତୁମେ ଜାଇ ରହିଚ । ବକ୍ସିଙ୍କ ପରି ଷେହି ତ ମୋଡ଼ିମାଡ଼ି ହୋଇ ରହିଲେ । ଜଗ୍ଗୀ ରାଜଗୁରୁ ତ ଦଫଡ଼ା ହୋଇ ଚାରି ହେଲେ । ସାଆନ୍ତ ରଜାମାନେ ତ ଦାନ୍ତରେ ତୃଣ ଧରି ଶରଣ ପଶିଲେ । ଆଜି ଆମେ କୋଉ ଗାଈର ଗୋବର ଯେ ? ତମର ତ

ନରକନ୍ତ ଜୀବନ । ବଣରେ ହାଉ ହାଉ କରି ରଡ଼ିଲେ
କିଏ ଶୁଣିବ ? କହିବ,—କଥା ମାନିବ ? ଶୁଣିବ ?

ପୁରାଣପଣ୍ଡା—କଅଣ ହେଲା ? ମାଣିକୀ ଗଡ଼ର ମୁଣ୍ଡ ଆପଣ । ଆପଣ ପଦେ କହିବେ; ତା ପୁଣି ତଳେ ପଡ଼ିବ କାହିଁକି ? ଏ ମୁଣ୍ଡ ଥିଲେ କେତେ ? ନ ଥିଲେ କେତେ ?

ଦଳ—ଏଇ ଭାଗବତ ଘରେ, ପୁରାଣ ଆଗରେ ସବୁ ସତ କହୁଚ କଥା ରଖିବ ? ମାନିବ ?

ସମସ୍ତେ—ହଁ ହଁ ଆଜ୍ଞା; ନିୟମ କରି କହୁଛୁଁ । ଦଳବେହେରାଙ୍କ କଥା ବେଦର ଗାର ।

ଦଳ—ହଉ, ଭଲ । ହଇ ହେ ! ମୋଟକୁ ତ ଗ୍ରେଟ ପାଏ ନାହିଁ । ଆମେ ଗାଁ ଗାଁ ହୋଇ ଗୋଟାଏ ରାଜ୍ୟ । କେତେ ଜଣ ସେ ଗୋରା ସାଇବ ? ଆମେ ଅଡ଼ି ବସିଲେ ଆଜ ରାଜ୍ୟ ଛାଡ଼ି ପଳେଇବାକୁ ତାଙ୍କୁ ରାହା ମିଳିବ ନାହିଁ । କହିଛି—ହପ୍ତାଏ ଛାଡ଼ି ଖଜଣା ଅସୁଲ କରିବାକୁ ଆସିବ ପରା ? ହଉ ଆସୁ ।

( ସଉଷା ବୋଉ ବୁଢ଼ୀ ଆସିଲା )

ବୁଢ଼ୀ—( ଦୂରରୁ ) ଭାଗବତ ଘରେ କିଏ ଅଛ ବାପା ! ଦଳବେହେରା ସାଆନ୍ତ ଏଠି ଅଛନ୍ତି !

ଦଳ—ହିଁ, କିଏ ? ଆସ, ଏଣିକି ଆସ ।

ବୁଢ଼ୀ—ମୁଁ ସଉଷା ବୋଉ, ହେ ସାଆନ୍ତ, ସାଆନ୍ତ ! ତେମେ ଅଛଟି ? ଓଡ଼ିଶା ମୁଲକରେ ମାଣିକୀ ଗଡ଼ ନାଆଁ ପଡ଼ିଥିଲା । ଏ ଗଡ଼ ପାଇକ ପୁଅଙ୍କ ଛାଇ ପଡ଼ିଲେ ଗରଭିଣୀ ଗାଈ ବାଛି ଛାଡ଼ୁଥିଲା । ତେମେ ଆପଣ ଥାଉଁ ଥାଉଁ, ଗଡ଼ କଅଣ, ନମୁଣ୍ଡିଆ ହୋଇଗଲା ? ଭେଣ୍ଡା ମରଦ ପୁଏ କଅଣ ଏ ଗଡ଼ରୁ ଲୁଚିଗଲେ ।

ଦଳ—କଅଣ ହେଲା ? କଥାଟା କଅଣ କହୁ ନାଁ, ମାଉସି ।

ବୁଢ଼ୀ—ଆଉ ମୁଁ କହିବି କଅଣ ? ତେବେ ପଦେ କହି ଦିଏ—
ଆମେ ରାଣ୍ଡ ଛେଉଣ୍ଡ ଗାଆଁ ମାଇପେ ମହଲ ଘିନ ରହିବୁଁ
କି କୁଅ ପୋଖରୀ ଖୋଳିବୁଁ ?

ଦଳ—କଅଣ କଥାଟା କହ ।

ବୁଢ଼ୀ—ଆଉ କହିବି କଅଣ ? ଘୁର ନୁଣ ମୂଠେ । କାଳ କାଳକ ବଡ଼ ବଡ଼କ ପିଲାଏ ଏମିତି ମାରି ଆସୁଥିଲେ, ନା ଆଜି ନୂଆ କଥା ଯେ ? ଗୁରି କୋଡ଼ି ହେଲା ବଅସ ମୋତେ । କେତେ ରଜା ଅମଳ ଦେଖିଛୁ । ଯୁ ତ ଆଉ ଦେଖାଶୁଣା ନ ଥିଲା । ଗୁଲ ଦେଖିବ, ମୋ ନାତୁଣୀକି । ମିଠି ତା'ର ଆଉ ନାହିଁ । ନଅ ବରଷର ପିଲା । ତା ପିଠିରେ ପୁଣି ଘୋଡ଼ା କୋରଡ଼ା ! ଗର ଗର ହୋଇ ଫାଟି ନହୁ ନୁହାଣ ! ଚେତାବୁଡ଼ ହୋଇ ପଡ଼ିଥିଲା । ରତମା, କେତକୀ ହେଉଛନ୍ତି ତାକୁ ଟେକି ଆଣିଛନ୍ତି । ସତେ କଅଣ ସେ ଆଉ ଜୀଇବ ? ଭଲା ଫିରଙ୍ଗୀ ଅମଳ ହେଲା ଯେ !

ଦଳ—ହଉ ମାଉସି ! ଘରକୁ ଯା । ମୁଁ ପଛେ ପଛେ ଯାଉଛି । ଦଳବେହେରା ଜୀଇ ଥାଉ ଥାଉ, ଆଉ ଏ କଥା ଶୁଣିବ ନାହିଁ, କି ଦେଖି ପାରିବ ନାହିଁ ।

ବୁଢ଼ୀ—ହଉ ! ତୁମେ ତ ପାରିବାର ପୁଅ । ଅଣ୍ଟ; ନଅଣ୍ଟ—ଚଢ଼େଇ ଚରଗୁଣୀଙ୍କ ପେଟ ଚଳି ବାବାଲ୍କ । ଏଣ୍ଡୁଅ ଧାଉଁଡ଼ ଶିଜ-ବୁଦା ମୂଳ ଯାଏ ପିନା ! ଆଉ କାହାକୁ କହିବୁଁ ? ତମ ଗାଁ ତମ ଭୂଇଁ, ତମ କୁଳମାନ, ରଖିଲେ ରଖିବ—ବୁଡ଼େଇଲେ ବୁଡ଼େଇବ । ଟିକଏ ଆସିବ ବାପା ! ମୁଁ ଗଲି ।

ଦଳ—ହଁ ତୁମେ ଯାଅ ।

( ବୁଢ଼ୀ ଗୁଲିଗଲା )

(ଟିକଏ ନୀରବ ରହି ଦଳବେହେରା ଗମ୍ଭୀର ଭାବରେ ଡାକଲେ)

ଦଳ—ରଘୁନାଥ !

ରଘୁ—ଆଜ୍ଞା !

ଦଳ—ଗୋପି ।

ଗୋପୀ—ଆଜ୍ଞା । କହନ୍ତୁ ।

ଦଳ—କାଲି ସକାଳେ—ରାତି ନ ପାହୁଣୁ—ଗଡ଼ରେ ନାଗରା ଦିଅ—ଖଜଣା କେହି ଦେବେ ନାହିଁ । ଆମ ବାପ ଅଜା ଯେମିତି ନିଷ୍କର ଭୂଇଁ ଚଷି ଖାଇ ଆସୁଥିଲେ, ସେମିତି ଖାଇବେ । ସେମିତି ଲୁଣ ମାରିବେ, ସେମିତି ବଣରୁ କାଠ ହାଣିବେ । ଗଡ଼ ମୁଣ୍ଡ ବାଟରେ ପର୍ବତ ପ୍ରମାଣ ଗଛ ଗଣ୍ଡି ହାଣି ଗଦା କର । ବଡ଼ ବଡ଼ ପଥର ପକାଅ । ବାଟକୁ ବନ୍ଦ କର । ଖଣ୍ଡାକୁ ସମସ୍ତେ ସାହାଣ ଦେଇ ରଖ । ଯେତେକ ଭେଣ୍ଡା ଅଛ, ବାହୁଣି ବରଗଛ ମୂଳେ କାଲି ବେଳ ଦ'ଘଡ଼ିକ ଗାଧୋଇ ପାଧୋଇ ପହଞ୍ଚି, ସିନ୍ଦୂର ଲଗେଇ ପାରିବ ?

ରଘୁ—ଆଜ୍ଞା ହଁ ।

ସମସ୍ତେ—ପାରିବୁଁ—ପାରିବୁଁ ଆଜ୍ଞା !

ଦଳ—ତେଣିକି ଯାହା କରିବାକୁ ହେବ, ମୁଁ କରିବି । ବାଟ ଘାଟ ବନ୍ଦ ହେଲେ ଆମ ଲୋକଙ୍କୁ ଧାନ ଚାଉଳ ମିଳିବ ନାହିଁ । ସେଥିକି ମୋର ଅମାର ଅଛି । ଦୁଇ ବର୍ଷ ଆଗେ ଖାଅ । ଆଖପାଖ ଗାଁଆକୁ ଏଇ ରାତି ରାତି ଖବର ଚଳେଇ ଦିଅ । ସମସ୍ତେ ମେଣ୍ଟ ବାନ୍ଧ । ମୁଁ ଏ ମୁଣ୍ଡକୁ ପାଣି ଛଡ଼େଇଲି ।

ସମସ୍ତେ—ହରିବୋଲ । ହରିବୋଲ । ହରିବୋଲ ।

( ସମସ୍ତେ ଉଠି ଠିଆ ହେଲେ )

———

## ଦ୍ୱିତୀୟ ଦୃଶ୍ୟ

( ମାଣିକ୍ୟ ଗଡ଼ । ଦୂରରୁ ନାଗରା ଶୁଭୁଛି ! ଦୁଇଜଣ ଗ୍ରାମବାସୀ କଥାବାର୍ତ୍ତା ହୋଇ ଆସୁଛନ୍ତି )

୧ମ ଗ୍ରାମବାସୀ—ହଁ, ବଳଦେବଙ୍କର ଯେତେବେଳେ ମୁଣ୍ଡ ପଡ଼ାଇଛନ୍ତି, କଥାଟାର ଏପାର ସେପାର ନ କରି ସେ ଘୁଞ୍ଚିବା ପୁଅ ନୁହନ୍ତି ।

୨ୟ ଗ୍ରାମବାସୀ—ଘର କହିଲୁ ଯେ ଭାଇ, ଫିରିଙ୍ଗୀ ପରା ଥାନପତି ହୋଇ ବସିଗଲାଣି ! ରାଜା ରାଜୁଡ଼ା ସମସ୍ତେ ତା ଆଡ଼କୁ ଆଉଜି ପଡ଼ିଲେଣି । ଗୁଳି, ଗୁଳା, ବାରୁଦ ସବୁ ଅଛି ତାର । ସମ୍ଭାଳି ହେବଟି ?

୧ମ—ଆରେ, ଯାଉ୍ ଜାନ୍—ଥାଉ୍ ମାନ୍ । ଏମିତି ଜୀଇ ଥାଉଁ ଥାଉଁ ନିତି ମରୁଛେ—ସେମିତି ଗାଆଁ ଭୂଇଁ, ମାଆ ଭଉଣୀ, ଜାତି ମହତ ପାଇଁ ଲଢ଼ିକରି ଦିନେ ମରିବା । ଓଡ଼ିଶା ଖଣ୍ଡର ପାଇକ ପିଲାଟି ! ଭୂଇଁରେ ପଡ଼ିଲାବେଳୁ ଲଢ଼େଇ କଥା କାନରେ ବାଜୁଛି ! ଡର କଅଣ ?

୨ୟ—ନାଇଁ, ସେଥିକି ଡର ନାଇଁ ଯେ । ଲୋକେ ଭେଳେଇ ପାରିଲେ ହେଲା । ଦେଶ ତାତି ରହିଛି । ଖାଲି ନିଆଁଟିକଏ ଲଗାଇ ଦେବା କଥା । ଗୁଳି, ବାରୁଦ ବରି ମୂଳକୁ । କି ବଗୁର ପଡ଼ୁଛି ଆଗ ଦେଖିବା ।

୧ମ—ଆରେ, ଆଉ ଦେଖିବୁ ଏଠେଇ କଅଣ ? କମ୍ପାନୀର ପଲଟଣ ଆସିବେ, ଦେଖାଦେଖି ସେଇଠି, ପରଖାପରଖି ହାତକୁ ହାତ । ମଲା ପରି ପଡ଼ି ରହିବା ଆଉ କଅଣ କରି ଗଣିବୁଁ ? ହଇ ରେ, ତେପନ ପୁରୁଷ ଆମର ନିଷ୍କର ବାହେଲ ଜମି ଭୋଗ ଦଖଲ କରି ଆସିଲେ, ଆଜ ଆମେ ଗଣିବୁଁ କର ?

୨ୟ—ନା, ନା, ସେକଥା ହବନାହିଁ । ଭୂକର ଆମେ ଦବୁ ନାହିଁ କାହାରିକି । କଅଣ କରିବ ଫିରିଙ୍ଗୀ ? କଅଣ ହବ ?—ଜୁଲମ୍ ହବ । ଘରଦ୍ୱାର, କଂସାଥାଳ, ସମ୍ପତ୍ତିବାଡ଼ି—ଚଳନ୍ତ ଦେବ, ଅଚଳନ୍ତ ସବୁ କୋରଖ କରିବ । ଘର, ଗାଆଁ ଜଳେଇ ଦେଉ । ବେଶୀ ହେଲେ, ତା କଥା ନ ମାନିଲା ବେଳକୁ—

( ଦୂରରୁ ତୋପ ଶୁଭିଲା )

୧ମ—ହେଇ ରେ ! ତୋପ ଶୁଭିଲା । ସଭା ଆରମ୍ଭ ହୋଇଯିବ । ଆଜ ବେଳ ବୁଢ଼ା ବୁଢ଼ୀ ବଣରୁ କାଠ ଆଣି, ମୁଣ୍ଡିଆରୁ ପଥର ଗଡ଼େଇ ଆଗେ ବାଟଟାକୁ ବନ୍ଦ କରିଦେବା । ଗାଆଁ ଗାଆଁକୁ ଖବର ଦେଇ ଲୋକ ଭେଳେଇ ନେବା । ତେଣିକି ଦେଖାଯିବ । ଆଗତ ପାଞ୍ଚ କାହିଁକି ?

୨ୟ—ନାଁ, ଏକା ଭେଳାରେ ତ ବସିଛେଁ । ବୁଡ଼ିଲେ ସଭିଏଁ ବୁଡ଼ିବା, ଜୀଇଲେ ରାମରାଜ୍ୟ ଆମର—ମହା ଭୋଗିବା । ତା ବୋଲି ଜଗନ୍ନାଥଙ୍କ ପା'ଚଳ ଛଡ଼ା ଏ ଓଡ଼ିଆ ପୁଅର ଆଉ ପୁଣି କେଉଁଠି ମୁଣ୍ଡ ନଇଁବ ? କେଉଁଠୁ ଆସିଲା ଏ ପରଦେଶୀ ବେପାରୀ—ସେ ପୁଣି ହବ ରାଜା—ବଣ କର ନବ—ଭୂକର ନବ—ଲୁଣକର ନବ ? ସତେ ଯେମିତି ତା ମୂଲକରୁ ଯାକୁ ସବୁ ଆମପାଇଁ ବୋଇତରେ ଲଦି କରି ଆଣିଥିଲା ?

୧ମ—କହୁଛି କର ଦଅ—ତା ପୁଣି କଉଡ଼ରେ ନୁହେଁ—ଟଙ୍କାରେ । ଟଙ୍କା କେଉଁଠୁ ପାଇବୁଁ ? ଏ ଅନ୍ୟାୟ, ଏ ଅତ୍ୟାଚାର, ଏ ବୈଷମ୍ୟ କିଏ ସହିବ ରେ ? ମାରୁ—ମରିବା । ସବୁ ପ୍ରଜା ମୂଳପୋଛ ହୋଇଯିବା । ନହେଲେ ବଣ, ପର୍ବତ, ନଈନାଳଠୁ କର । ଜୀବନରେ ଥାଉ ଥାଉ ଏ ଅବୈଧ କିଏ ସହିବ ରେ ?

୨ୟ—ନା, ନା, ନା—କିକାଳେ ଏ କଥା ହବ ନାହିଁ—ହବ ନାହିଁ —ହବ ନାହିଁ ।

( କହି କହି ଦୁହେଁ ଗୁଳିଗଲେ )



## ତୃତୀୟ ଦୃଶ୍ୟ

( ଖୋରଧା କଚେରୀ । ଶାସକ ବସିଛନ୍ତି । ଜଣ କେତେ କର୍ମଚାରୀ ଠିଆ ହୋଇଛନ୍ତି । ପିଅାଦା, ସିପାହୀ ଓ ସୁବେଦାର ଅଛନ୍ତି । )

ସାହେବ—ନାଁ ! ଦେବେ ନାହିଁ ?

ସୁବେଦାର—ହଜୁର ! ବହୁତ ବୁଝାଇ କହିଲୁଁ । ବିଲ୍‌କୁଲ୍ ମନାକଲେ, ଏ ଚକଡ଼ି ତାଙ୍କୁ ବି ଅନେକ କରି କହିଲି । ଆମେ କହିଲୁଁ :—ଆମେ ତୁମ ଦେଶର ଲୋକ—ତୁମ ଭଲ ଚାହୁଁ । କର ଦେଇ ପକାଅ । ସୁଖରେ ଘରଦ୍ୱାର କରି ରହ । କାହିଁକି ମିଛରେ ଜନ୍ଦା ପିମ୍ପୁଡ଼ି ପରି ମରିବ ? ପାଣି ଭିତରେ ଘର କରି କୁମ୍ଭୀର ସଙ୍ଗେ କି ବାଦ ? ଏକା ଜାଗାରେ ତୁମ ଆମ ଘର । ଆମ ଭଲକୁହା ମାନିଯାଅ ।

ସାହେବ—ଠିକ୍ ତ କହୁଛ । ନା କଅଣ, ନାଏବ ବାବୁ ?

ନାଏବ—ହଜୁର ହଁ । ସୁବେଦାର ଯେତେ ବୁଝାଇବାର ବୁଝାଇ ଦେଇଛନ୍ତି ।

ସାହେବ—ତେବେ ? ସେମାନେ କି ଜବାବ ଦେଲେ ?

ସୁବେଦାର—ଆଉ ସେ କଥା କାହିଁକି ପଚାରୁଛନ୍ତି ହଜୁର ? ଯେତେବେଳେ କହିଲୁଁ—ଏକା ମାଟିର ଆମେ ସବୁ ବୋଲି, ମାଣିକ୍ୟ ଗଡ଼ର ଜଣେ ପାଇକ ବାହାରିପଡ଼ି କହିଲା—ତୁମ

ହୁଅ ହେ—କେତେ ଏକା ମାଟିର ବୋଲି କହୁଛ ? ଆମେ ଜାଣୁ ଏକା ମାଟିରେ କୁକୁର ଥାଆନ୍ତି—ଅଇଁଠା ଖାଇ ଗୁଡ଼ନ୍ତି—ପୁଣି ସେଇ ମାଟିରେ ଗୋ-ମାତା ଅଛୁ—ସେ ପୂଜା ପାଏ । ଏକା ମାଟିର ହେଲେ ବୋଲି କଅଣ ଦୁହେଁ ସମାନ ହେଇ ଯିବେ ? କହୁଛ ଖଜଣା ଦବୁଁ ? କାଲି କାଲକ ତ ଦେଇ ଆସିନାହୁଁ, କଏ ଆମଠୁ ଖଜଣା ନବ ଆସୁ—ତା ଆମର ଶକ୍ତି ଜଣା ହବା—ମୁହାଁମୁହିଁ ।

ଶାସକ—(ରାଗି) ହୁଁ ! ଆମକୁ ଡାକୁଛନ୍ତି ତେବେ ଖୁବ୍ ତ ବହାଦୁର୍ । କମ୍ପାନୀ ବାହାଦୂରକୁ ଯୁଦ୍ଧ ଡାକର ? ଆଚ୍ଛା ସେମାନେ କଅଣ ବନ୍ଧୁକୁ ଦେଖି ନାହାନ୍ତି ? ଏତେ ବଡ଼ ବୀର ତ ହାରିଗଲେ— ଆମର ବଶ ମାନିଲେ । ଏମାନେ ତ ଛାର । କହିପାରିବ ସୁବେଦାର, କଏ ସେମାନଙ୍କର ସର୍ଦ୍ଦାର ?

ସୁବେଦାର—ହଜୁର ଗଡ଼ ମାଣିକ୍ରୀର ଦଳବେହେରା । ତାଙ୍କର ବଳରେ ଏ ସବୁ ନାଚୁଛନ୍ତି ।

ଶାସକ—ସେ କଏ ତା କଥା ଲୋକମାନେ କାହିଁକି ମାନୁଛନ୍ତି ?

ସୁବେଦାର—ହଜୁର ! ସେ ବଡ଼ ଦୟାଳୁ ଲୋକ । ଭଲ ମନ୍ଦରେ ଲୋକଙ୍କୁ ସାହାଯ୍ୟ କରନ୍ତି । ଭାରି ଦାନୀ । କେହି ତାଙ୍କ ଦୁଆରୁ କେବେ ଫେରେ ନାହିଁ । ଲୋକମାନଙ୍କର ଥିଲେ ନ ଥିଲେ ଚଳାନ୍ତି । ମାଣିକ୍ରୀ ଚକଡ଼ାରେ ସମସ୍ତେ ତାଙ୍କୁ ଦେବତା ପରି ମାନନ୍ତି ।

ଶାସକ—ହଁ, ଦେବତା ପରି ମାନନ୍ତି । ବେଶ୍ ଦଳବେହେରାକୁ ଡକାଅ, ଆମେ ତା ସଙ୍ଗେ କଥାବାର୍ତ୍ତା ହେବା ।

ନାଏବ—ହଜୁର ! ସେ କଅଣ ଆସିବେ ?

ଶାସକ—ନେଇକି ଆମର ଫୌଜ ଯାଉ । ଦଳବେହେରାକୁ ଧରି-

ଆଣୁ । ଭଲରେ ନ ଆସିଲେ, ଜବରଦସ୍ତି ବାନ୍ଧ କରି ଆଣୁ । ସେ ମେଳିଆଙ୍କର ସର୍ଦ୍ଦାର । ସୁବେଦାର !

ସୁବେଦାର—ହଜୁର ।

ଶାସକ—ଆଜ ଆମେ ମାଣିବୀ ପ୍ରଜାଙ୍କୁ ସମୟ ଦେବୁ ନାହିଁ । କର ଆଦାୟ ହେଉ—ନ ଦେଲେ ଗୁଳି, ଗୁଳି । ଘର ଜଳାଇ ଦିଅ । ଅତ୍ୟାଗ୍ଚର, ଅତ୍ୟାଗ୍ଚର ! ପ୍ରଜା-ଶାସନ ଆମେ ଜାଣୁ । ଯାଅ, ନାଏବ ବାବୁ ।

ନାଏବ—ହଜୁର ।

ଶାସକ—ପଲ୍ଟନ ପଠାଅ । ଦଳବେହେରାଙ୍କୁ ଧରିଇ ଆଣ । ଭଲରେ ହେଉ, ମନ୍ଦରେ ହେଉ—ହୁକୁମ କମାଣି ବାହାଦୂର । ( ଚୌକି ଛାଡ଼ି ଉଠିଲେ )

ନାଏବ—ହଜୁର । ( ସଲାମ କଲେ )

—————

## ଚତୁର୍ଥ ଦୃଶ୍ୟ

( ମାଣିକଚୀ ଗାଆଁ ମୁଣ୍ଡ । ଦଳବେହେରା ଓ ଗୋପୀ କଥାବାର୍ତ୍ତା ହୋଇ ଆସିଲେ । )

ଦଳ—ଗଣ୍ଡି କାଠ ଯାହା ଜମା କରି ଦେଇଛ ସେ ଠିକ୍ ଅଛି । ତା ଆଗରେ ବଡ଼ ବଡ଼ ଡିମା ପଥର ଗଦା କରିବାକୁ ହେବ । ଅଳ୍ପ ନୁହେଁ, ଫିରଙ୍ଗୀ ପଲଟନ ଆସି ଦେଖି ଏଠି ଗାଆଁ ଗଣ୍ଡା ନାହିଁ—ଗୋଟାଏ ପାହାଡ଼—ପାହାଡ଼ଟାଏ ଠିଆ ହୋଇଛି । ବୁଝିଲ ଗୋପୀନାଥ ।

ଗୋପୀ—ମୁଣ୍ଡିଆରୁ ପଥର ବୁହା ଚାଲିଛି । ଷାଠିଏ ଖଣ୍ଡି ଶଗଡ଼ ଧାଡ଼ ଲାଗିଛି । ଦୁଇଶ ଲୋକ ପଥର ଢାଳୁଛନ୍ତି । କେତେ ଦୋଳା କରି ବୋହୁଛନ୍ତି । କେତେ ଗଡ଼େଇ ଗଡ଼େଇ ଆଣୁଛନ୍ତି । ଆଜ ସଞ୍ଜ ଭିତରେ ବାଟରେ ପାହାଡ଼ ଠିଆ ହୋଇଯିବ ଆଜ୍ଞା !

ଦଳ—ଆମ ଖମାରରୁ କେତେ ଧାନ ବାହାର କଲ ?

ଗୋପୀ—ଏଇନେ କୋଡ଼ିଏ ଭରଣ ଚାଉଳ କରିବାକୁ ଦିଆଗଲା, ଅଛି ତ, ପରେ ଦେଖାଯିବ ।

( ରଘୁନାଥ ଆସିଲା )

ରଘୁ—( ଦଣ୍ଡବତ କରି ) ଆଜ୍ଞା । ଗୋଟେ ଖବର ଶୁଣିକରି ଧାଇଁଛି ।

ଦଳ—କ'ଣ ରଘୁ, କି ଖବର ?

ରଘୁ—ଆଜ୍ଞା···ଚକରା ଆସୁଥିଲା ।

ଦଳ—ଚକରା କିଏ ? ସେଇ ଯେ ଫିରଙ୍ଗୀର ପିଆଦା ଚାକର କରିଛି, ସେଇ ନା ?

ରଘୁ—ଆଜ୍ଞା ! ମୋତେ ବଡ଼ତ ଫୁସୁଲାଫୁସୁଲା କଲା,—ଭୂକର ଅସୁଲ କରି ଦେବାକୁ ଆମ ମାଣିନୀ ଗଡ଼ରୁ । ଆମେ କର ନ ଦେବା ଖବର ଆଖ ପାଖ ଗାଆଁ ଲୋକେ ତ ଜାଣି ଗଲେଣି । ସେମାନେ ବି ଅଡ଼ି ବସିଲେଣି । ମେଣ୍ଟ ବାନ୍ଧିଲେଣି ସମସ୍ତେ । ଖବର ଖୋରଧାରେ କମ୍ପାନୀ କଚେରୀକି ଗଲାଣି ବାହାରି ।

ଦଳ—ହଁ, ଯିବାର ତ କଥା । ସେଇଠୁ ? ଆସନ୍ତୁ ପଲଟନ—କର ଆଦାୟ କରିବାକୁ ।

ରଘୁ—ଚକରା କହିଲା, ଫଉଜ ଆସୁଛନ୍ତି ଆପଣଙ୍କୁ ଧରିନେବେ । ଆମ ମୁଣ୍ଡ କଟିଯିବ ଆଜ୍ଞା, ଯା ତ ତିନିକାଳେ ହୋଇ ପାରିବ ନାହିଁ ।

ଦଳ—(ହସି) ଅଛି, ସେ କଥା ତ ଅଛି । ମୁଁ ଆଉ କଅଣ ସେ ଡର ରଖିଛି ? କହିଛି ପରା, ଏ ମୁଣ୍ଡକୁ ପାଣି ଛଡ଼ାଇ ଦେଇ । ତୁମେମାନେ ଦମ୍ଭ ଧର । ସିଂହ ପିଲା ମୁଁ; ମୁଁ ତ ମୁଁ—ମୋ ଲାଞ୍ଜ ଧରିବା କାଠିକର ପାଠ ! ଧରିଲେ ଦଳବେହେରା ମଡ଼ାକୁ ଧରିବେ । ଜୀଅନ୍ତାରେ ନୁହେଁ । ଥୟ ଧର, ଚାଲ, ଆଖି ଆଗରେ ଯାହା କାମ ଅଛି, ତାକୁ ଆଗେ ସାର । ମୁଁ ମୋ ବାଟ ଧରିବି । ଆଉ ଉଛୁର କଲେ ଚଳିବ ନାହିଁ । ମୁଣ୍ଡିଆ ପାଖକୁ ଚାଲ, ଆସ ।

( ଗୋପୀ ଓ ରଘୁକୁ ସଙ୍ଗରେ ନେଇ ଦଳବେହେରା ଚାଲିଗଲେ )

———

## ପଞ୍ଚମ ଦୃଶ୍ୟ

[ ମାଣିକୀ ଗାଆଁର ଅଦୂରବର୍ତ୍ତୀ ଆମ୍ବ ତୋଟା—ଦୁଇଟି ବରକନ୍ଦାଜ ପାଖାପାଖି ହୋଇ ବସିଛନ୍ତି ]

୧ମ—ଓଃ । କାଲି ରାତିଟାଯାକ ଯୋଉ ମଶା ।

୨ୟ—ଆରେ କହନା, କହନା, ମଶା କହୁଛୁ ମୁଁ, ଡାଉଁଶ କହୁଛୁ ମୁଁ । ବୋପା ମାଆ ଆମ ପରି ପୁଅ ଜନମ ନ କରି ଆଣ୍ଠୁକୁଡ଼ା ଯାହା ହେଲେ ନାହିଁରେ ଗୋପାଳଆ । ଖିଆ ନାଇଁ, ପିଆ ନାଇଁ,—ମୁଡ଼ି, ହୁଡ଼ୁମ୍ବରେ କେତେଦିନ ମଣିଷ ଚଳିବ ?

୧ମ—ଆଜି ରୁଲ ପଳେଇବା; ଜାଣିଲୁ ଗୋବନ୍ଦା ! ମାଣିକର ଗାଆଁକୁ ଏମିତି କଟକଣା କରି ଦେଇଛି ମୋ ଦଳବେହେରା ଯେ, ଚଢ଼େଇ ପିଲ୍‌ଟେ ଉଡ଼ିବାକୁ ନାହିଁ । କୋଉଠି ଅଛୁ, କୋଉଠିକି ଯାଉଛି, କିଛୁ ଖବର ମିଳୁନାହିଁ । ଆମେ ଯୋଡ଼ାଏ ବାବନାଭୂତ ପରି କାହିଁ ଶାଳ ଗଛ, କାହିଁ ବର ଗଛରେ ସାରା ରାତି ଚଢ଼ି କେତେ ଏବେ କାହାକୁ ଜଗିବା ?

୧ୟ—ଆରେ ଜଗିବା କାହାକୁ ଦଳ ବେହେରା, ନା ଆପଣାକୁ ରେ ? ଯେବେ ଟିକିଏ ଖବର ମିଳିଯିବ, ଆମେ ଦଇଟା ସୁରକ ନେବାକୁ ଛକିଛେଁ ବୋଲି, ଆମ ହାଡ଼ ମାଉଁସ କାଉ

ଶାଗୁଣାଙ୍କୁ ଫୁଟେ ଫୁଟେ ପଡ଼ିବ ନାହିଁ । ପାଇକେ ଖଣ୍ଡା ପକେଇ ବସିଛନ୍ତି ।

୧ମ—ଭାଇ ! କ ମିଳିବ ସେ ପାଞ୍ଚଶ ଟଙ୍କାରୁ ! ଆପେ ଥିଲେ ବାପର ନାଁ । ଆଜ ଚାଲ ଘରକୁ ବାଟ କାଟିବା । ଚାରି ଦିନ ଗଲେ ଖୋରଧା କଚେରୀରେ ଖବର କରିବା, ଜଗି ଜଗି କଷ୍ଟ ସୁବିଧା ପାଇଲୁ ନାହିଁ ।

୨ୟ— ମୋ ଅଗଜଭରୁ କଥାଟା ଛଡ଼େଇ ନେଲୁରେ ଗୋପାଳଆ ! ଖାଲି ତୋ'ର ଡରରେ ମୁଁ ସେ କଥା ଉଙ୍କାରୁ ନ ଥିଲି ।

୧ମ—ମୁଁ ତ କାଲିଠୁଁ କହିବ କହିବ ହେଇ ଖାଲି ତୋର ଗିଳାକରି କଥାଟା ରଖିଦେଇ ଥିଲି, ଚୁନିଅରେ ।

( ଅଦୂରରେ ଖସ୍ ଖସ୍ ଶବ୍ଦ ଶୁଣା ଗଲା )

୨ୟ—( ଗୋପାଳର ମୁହଁ ମୁଦି ଧରି )ରହ, ରହ, କିଏ ସେ ଆସୁଛି । ଖଣ୍ଡାରେ ହାତ ପକା । ସଜ ହୋ, ପଡ଼ । ମା ବରୁଣେଇ; ମା ବରୁଣେଇ, ମା ବରୁଣେଇ !

୧ମ—(ଉଠି ,ବାହାରକୁ ଉଣ୍ଡି, ଫେରିଆସି)ଆରେ, ଦମ୍ଭ ଧର ମ ! ବୁଢ଼ୀଟାଏ, ପତର ଗୋଟାଉଛି, ବରଗଛ ମୂଳେ ।

୨ୟ—ଓହୋ ! ମୁଁ ମନେ କଲି ପାଇକ ପିଲେ ଖବର ପାଇ ଗଲେ ଅବା ?

୧ମ—ଡାକ୍ ଡାକ୍ ! ମାଉସୀ ବୋଲି ଡାକ୍ ! ଦେଖିବା, ଏତେ କଷ୍ଟ ତ ପାଇଲେଣି, କେଜାଣି ଯେବେ ଖବରଟା ମିଳିଯିବ ଅବା !

( ୨ୟ ଉଠିଯାଇ ଡାକିଲା )

୨ୟ—ମାଉସି, ମାଉସି ! ଶୁଣିଲୁ ଶୁଣିଲୁ , ଟିକିଏ !

ବୁଢ଼ୀ—( ନେପଥ୍ୟରୁ , କିଏରେ ପୁଅ । କିଏ ଡାକୁଛୁ ?

୧ମ—ଆସ୍, ଆସ୍ ଶୁଣ !

( ବୁଢ଼ୀ ଆସିଲା )

୨ୟ—ଆ, ଶୁଣି ଯା, ପାଖକୁ ଆ ।

ବୁଢ଼ୀ—(ଟିକଏ ରହିକି) କଅଣ କହୁଚ ? କହୁନା । ଶୁଭୁଚ ମତେ । ମୁଁ କାଲୁଣୀ ନୁହଁ । କାହିଁକି ଡାକୁଚ ?

୧ମ—ତୋ ଘର କୋଉଠି ?

ବୁଢ଼ୀ—ଏଇ ଗାଁଆରେ । ଗଡ଼ ମାଣିକପୁରରେ । କାହିଁକି ? ତୁମେ କୋଉଠାର ? ତୁମେ କିଏ ?

୧ମ—ଆମ ଘର ଟିକଏ ଦୂର ଗାଁଆରେ । ବାଟୋଇ ଦୁ'ଜଣ ଆମେ ।

ବୁଢ଼ୀ—ହଉ । ( ଫେର ଯାଉଥିଲା )

୧ମ—ଆଲୋ ମାଉସି ! କଥାଟା ଶୁଣ ।

ବୁଢ଼ୀ—କଅଣ କହୁନା ! (ଠିଆ ହେଲା)

୧ମ—ଆଲୋ, ଆମେ ଆସିଥିଲୁ ଦଳବେହେରାଙ୍କ ପାଖକୁ ଟିକଏ । କୋଉଠି ଅଛନ୍ତି ସେ ଜାଣିଚୁ ?

ବୁଢ଼ୀ—ବଡ଼ଲୋକ ସେ ! ତାଙ୍କ ଘରେ ସେ ଥିବେ ନି—ଆମେ ଦୁଃଖୀ ଲୋକ, ଆମେ କି ଜାଣୁ ତାଙ୍କମାନଙ୍କ କଥା ?

୨ୟ—ତୁ ଲୁଚଉଚୁ ମାଉସି, ସବୁ ଜାଣିଚୁ; କହୁ ନାହୁଁ ।

ବୁଢ଼ୀ—ମଲା ! ମୁଁ କି ଜାଣେ ମ ? ତୁମେ ସବୁ କୁଆଡ଼େ ଆସିଚ କହିବ ।

୨ୟ—କହିଲୁ ପରା ଦଳବେହେରାଙ୍କ ପାଖକୁ । ତୁ ତ କହୁ ନାହୁଁ ।

ବୁଢ଼ୀ—କହିଲି ପରା; ତାଙ୍କ ଘରେ ଥିବେ, ଆଉ କେମିତେ କହିବ ? ତୁମେ କହୁନା, ଦଳବେହେରାଙ୍କ ପାଖେ କଅଣ କାମ ।

୧ମ—ତାଙ୍କ ସଙ୍ଗେ ଦେଖାହେଲେ ସିନା !

ବୃଢ଼ୀ—ହଉ ତେବେ ଯା, କୋଉଠି ଥିବେ ଖୋଜ, ଦେଖ ! (ଗୃହ ଯାଉଥିଲ )

୨ୟ—ଏ ବୁଢ଼ି ! ଶୁଣ କହୁଚ । ଦଳବେହେରା କୋଉଠି ଅଛନ୍ତି କହ ।

ବୃଢ଼ୀ—(ଫେରି) ମଲ ! ଇଙ୍ଗ ଆଖି କରି ତ କଅଣ ପଚାରୁଛୁ ? କିଏ ରେ ତୁମେ ଛତରା ? ଫିରିଙ୍ଗୀ ଘରଲୋକ ତୁ, ନାହିଁ ? ଦଳବେହେରା କୋଉଠି ଅଛନ୍ତି, ମୁଁ କି ଜାଣେ ରେ ? ମୁଁ କଅଣ ତାଙ୍କୁ କାନରେ ଗଣ୍ଠିକରି ବୁଲୁଚ ? ଯାଉନୁ । ଆମ ଗାଁ ନରିଦଙ୍କୁ ପଚିରିବୁ । କାଣୀ ବଳେଇ ଅସରପା ଉପରକୁ ଉଡ଼ା ? ମତେ ବୁଢ଼ୀଟାଏ ଦେଖିଲୁ, ନାହିଁ ?

୧ମ—ହଁ, ହଁ, ଷାଠିଏ କାଳର ବୁଢ଼ୀ ହେଇ ତୁ ସତ କଥା କହୁନୁ ? ପାହାରେ ବାଜିଲେ ଏଇନେ ସତ କଥା ବଳେ ବାହାରି ପଡ଼ିବ, ଜାଣିଚୁ ?

ବୃଢ଼ୀ—ହଁ ଜାଣିଚ । ବାଡ଼ପଡ଼ାର ଏତେ ସାହସ ! କାହିଁକି ? ତୋ ଘରେ ମାଆ ମାଉସୀ ନାହାନ୍ତି କି ? ଯାଉ ନାଉଁ । ପାହାର ଯେଉଠି ଅନୁକୂଳ କରିବୁ । ମାରିବୁ ? କାହିଁ ମାଇଲୁ ଦେଖି ! ପାଟିଟାଏ କରିଦେଲେ ସହସ୍ରେ ଠେଙ୍ଗା ତୋ ପିଠି ଉପରେ ପଡ଼ିବ । କହିଲ ପାହାର ! ମୁଁ କି ଜାଣେ ରେ ଦଳବେହେରାଙ୍କ କଥା । ପରଜାତୁଆ ନୁଉଁଛୁଣା ! ଉଠ୍ ବାଟରୁ ଉଠ୍ । ( ଘଞ୍ଚିକରି ଯାଉ ଯାଉ) ଆହେ ଦେଖ ହେ ! କହୁଚ କଅଣ ନା ପାହାର ଦେବ ! ହଇରେ, ହଇରେ ! ହାତ ଛୁଡ଼ ପଡ଼ିବ ନାହିଁ ତୋର ! ହଉ, ମାରିବୁ ପରା ? ଟିକିଏ ଏଇଠି ଥା । ଜୀବନ ନେଇକରି ଯେବେ ଯାଇଚୁ—ମୋ

ନାଁ ନାଇଁ ! (ଯାଉ ଯାଉ ) ଆରେ ଏ ପିଲେ ! ଆରେ ଦେଖିଲ ଦେଖିଲ, ଏ ହ'ଟା କଏ ! ଦଲବେହେରଙ୍କୁ ଖୋଜୁଛନ୍ତି । ମୋତେ ମାରିବାକୁ ଚଢ଼ୁଛନ୍ତି । ଆସିବଟି ରେ ପିଲାଏ !
( କହୁ କହୁ ଚାଲିଗଲା )

୨ୟ—ଆରେ ହେ ଗୋପାଳିଆ ! ଦାରୁଘରେ ନିଆଁ ଲଗେଇ ଦେଲୁ ? ଚାଲ ଚାଲ କେମିତି ଖସି ପଳାଇବା । ଜୀବନ ବଡ଼, ନାଁ ମାଇବଦଳର ପୁରସ୍କାର ବଡ଼ ରେ ! ମେଳିଆ ଗାଆଁ ! ମାଣଡ଼ଗାଟି ! ଏଠି ବାଲୁଆ କହୁଛ ମୁଁ ମହାବଳ ବାଘ ! ଟିକଏ ଖବର ପାଇଲେ, ଆଜ ମୁଣ୍ଡ ରହିବ ଆ, ଆ, ଖସି ପଳାଇବା ରେ, ଜୀବନ ଆଗ ରହୁ ।
( ଦୁହେଁ ବୁଢ଼ୀର ବଗିଚା ବାଟରେ ପଳାଇଲେ )



## ଷଷ୍ଠ ଦୃଶ୍ୟ

ସ୍ଥାନ—ବନ-ପଥ ( ଦଳବେହେରା ଧୂମା ଜାଳି, ବାବାଜୀ ବେଶରେ ବସିଛନ୍ତି । ତାଙ୍କ ଆଗରେ ହାତଯୋଡ଼ି ବସିଛୁ କମ୍ପାମର ସୁବେଦାର )

ସୁବେଦାର—ବାବା, ଦିନେ ନୁହେଁ, ମାସେ ନୁହେ,—ବର୍ଷ ସଂଖ୍ୟା ବିତିଗଲା; ଘରଦ୍ୱାର, ପିଲାକୁଟୁମ୍ବ ଛାଡ଼ି ବଣ ପାହାଡ଼ ଜାଣି ଆମର ଘର ହେଲାଣି, ବାଘ ଭାଲୁ ବନ୍ଧୁକୁଟୁମ୍ବ ହେଲେଣି । ଆଉ କେତେ କୋଉଠା ଖୋଜିବୁଁ ? ଦଳବେହେରା ମଲା କି ଗଲା—ହେଲେ ଜଣାଯାଆନ୍ତା ! ଏଣେ ତ ମେଳି ବଢ଼ି-ଗଲାଣି । ଆପଣ ତ ତିନିକାଳ କଥା ଜାଣନ୍ତି ବାବାଜୀ ! ଟିକିଏ କହିଲେ—ଧରାପଡ଼ିବ କି ନାହିଁ ।

ଦଳ—ଦେଖ ସୁବେଦାର ! ମୋତେ ଜଳ ଜଳ ଦିଶୁଚି—ଦଳ-ବେହେରା ମରି ନାହିଁ । ମାଣଷୀ ଆଖପାଖରେ ଅଛି । ତୁମେମାନେ ତାଙ୍କୁ ଦେଖି କରି, ଦେଖୁ ନାହିଁ ।

ସୁବେଦାର—ଦେଖି କରି ଦେଖୁ ନାହୁଁ ? ଆଉ ତେବେ କେମିତି ଅଛି ସେ ? ମୁଁ ତ ଏକୁଟିଆ ନୁହଁ, କମ୍ପାନୀ ସାହେବ ଇନାମ ଦେବ ବୋଲି ଢେଙ୍ଗୁରା ବାଡ଼େଇଛି । ଦଳବେହେରା କଟା ମୁଣ୍ଡ ଯେ ସାହେବକୁ ଦେଖେଇବ; ସେ ପାଞ୍ଚଶ ଟଙ୍କା ପାଇବ । ଜଣେ କାହାରି ଆଖିରେ ପଡ଼ନ୍ତା ନାହିଁ ସେ ?

ଦଳ—ତୁମେ ଗାଆଁ ଲୋକଙ୍କୁ କହ । ସେମାନଙ୍କୁ ଫୁସ୍‌ଲାଫୁସୁଲ କଲେ ଦଳବେହେରା ଭେଟ ପାଇବ ।

ସୁବେଦାର—ଆରେ ରାମ ରାମ ! ଗାଆଁ ବାଲା ! ଗାଆଁକୁ ଯିବାକୁ ଆଉ ବାଟଘାଟ ରଖିଛନ୍ତି ସେ ? ଦୁଇମୁଣ୍ଡରେ ଗୋଟାଏ ଗୋଟାଏ ପାହାଡ଼ ଠିଆ କରିଦେଇ ନିଶ୍ଚିନ୍ତରେ ନଈରେ ହାତମାରି ବସିଛନ୍ତି ସେ । ତାଙ୍କୁ ପଚାରିଲେ ଢୁଣ୍ଡିରେ ଚୁଁ, ଖଣ୍ଡାରେ କଥା କହିବେ ସେ । ତେଣେ ଗାଆଁକୁ ଗାଆଁ ଧନକୁ ଧନ ମେଳ ବଢ଼ୁଛି ।

ଦଳ—ଗାଆଁ ଲୋକେ ବାହାରକୁ ଯିବା ଆସିବା ତ କରୁନାହାନ୍ତି; ଖାଉଚନ୍ତି ପିଉଚନ୍ତି କଅଣ ତେବେ ?

ସୁବେଦାର—କେଜାଣି, କୋଉଠି କେତେ ରଖିଛନ୍ତି ? କୋଉ ଦଇବ ତାଙ୍କୁ ଖାଇବାକୁ ଦଉଚି ? ଆଚମ୍ବିତ କଥା ହେଉଚି; ବାବା !

ଦଳ—ଯାହାହେଉ, ତୁମେ ଖୋଜିଲେ ଦଳବେହେରାକୁ ପାଇବ, ଯାଅ, ଖୋଜ ।

ସୁବେଦାର—ହଉ, ଫେରି ଦେଖା କରିବ । ଯାଉଛି । ସାଧୁ-ଆଜ୍ଞା ! ଦେଖାଯାଉ । (ମୁଣ୍ଡିଆ ମାରି ଚାଲିଗଲା)

(ଦଳବେହେରା ସୁବେଦାରକୁ ଗୋଡ଼ଠାରୁ ମୁଣ୍ଡଯାଏଁ ଚାହିଁଲେ । ଦୂରରୁ ଗୋଟାଏ ଶବ୍ଦ ହେଲା, ପକ୍ଷୀ ଡାକିଲା ପରି । ଦଳବେହେରା ସେହିପରି ପ୍ରତିଶବ୍ଦ କଲେ । କିଛି ବେଳ ପରେ ରଘୁ ଆସିଲା—ଶରୀର ପରି ଲୁଚି ଲୁଚି । ମୁଣ୍ଡରେ ଠେକା ଭିଡ଼ିଛି । ହାତରେ ଖଣ୍ଡା ଧରିଛି ସେ ) ।

ରଘୁ—( ଦଳବେହେରାଙ୍କୁ ଦଣ୍ଡବତ କରି ) ସୁବେଦାର ଯାଉଚି । ଏଇ ଆଗ ବାଟେ ତାକୁ ଦେଖି ଆସିଲି ।

ଦଳବେହେରା—(ହସି) ମୋ ପାଖକୁ ଆସିଥିଲା । ଦଳବେହେରାକୁ

ସେ ଖୋଜନ୍ତି । କଣ୍ଟା ମୁଣ୍ଡ ନେଇ ଖୋରଧା କଚେରୀରେ ଦେଲେ ପାଞ୍ଚଶ ଟଙ୍କା ମିଳିବ ।

ରଘୁ—ଆପଣ କଅଣ କହିଲେ ?

ଦଳବେହେରା—କହିଲେ ଖୋଜ, ଦଳବେହେରାଙ୍କୁ ପାଇବ ।

ରଘୁ—ହଉ ତେବେ, ଆଜ ରାତି ତା କଣ୍ଟା ମୁଣ୍ଡ ବାଉଣ୍ଡ ଆଗରେ ଛେଦ ପଡ଼ିବ ।

ଦଳବେହେରା—ଛି, ଛି, ପେଟପାଇଁ ସେମାନେ ଧାଇଁଛନ୍ତି । ତାଙ୍କୁ ମାରି ହାତ ଗନ୍ଧାଇବ । ପାଇକ ପୁଅର କାମ ସେ ନୁହେଁ । କୋଉ ପାଣି କୋଉଠିକି ଯାଉଚି ଦେଖ । ଖମାର ଧାନ ସରିଲାଣି ?

ରଘୁ– ଅଧା ହୋଇ ନାହିଁ, ସରିବ କଅଣ ! ଲୋକେ ଖାଇ ପିଇ ଭଲରେ ଅଛନ୍ତି । ଫୌଜ ଘେରାଉ କରି ବସିଛନ୍ତି ଗାଁ ମୁଣ୍ଡେ । ପାଖ ଆଖ ଗାଆଁକୁ ଖବର ଯାଇଚି । ମେଣ୍ଟ ବାନ୍ଧିଲେଣି ସେମାନେ । ଆଉ କଅଣ କଅଣ କରିବୁ ବୋଲି ପଚାରିବାକୁ ଆସିଲି ।

ଦଳ—ଆଉ କିଛି ଦିନ ଥୟ ଧର । ଦେଖ, ପଲଟନ କଅଣ କରୁଛନ୍ତି । ଆମ ଆଡୁ କିଛି ଗୋଳମାଳ ଆନୁକୂଳ କର ନାହିଁ । ଚାଲ; ଏଠାରେ ଆଉ ମୋର ରହିବା ଉଚିତ ନୁହେଁ । ସୁବେଦାର ଆସିଥିଲା । କେତେବେଳେ ଯଦି ତାର କୌଣସି ସନ୍ଦେହ ହୁଏ, ଅସୁବିଧା ହେବ ।

ରଘୁ—କେତେକାଳ ଆଉ ଘରଦ୍ୱାର ଛାଡ଼ି ଆପଣ ଶୀତ, ଖରା ବର୍ଷାରେ ବଣେ ବଣେ ବୁଲୁଥିବେ ? ଯା'ର କଅଣ ଅନ୍ତ ନାହିଁ ଆଉ ?

ଦଳ—(ଉଠି, ଉପରକୁ ଠାରିଲେ) ଜଗନ୍ନାଥଙ୍କ ଇଚ୍ଛା, ଚାଲ ।

(ଦୁହେଁ ପ୍ରସ୍ଥାନ)

---

# ସପ୍ତମ ଦୃଶ୍ୟ

## ବନପଥ

( ଗୋଟିଏ ଦରିଦ୍ର ବୁଢ଼ା ନାଉରୀ ଏକ ଦିଗରୁ ଆସି ଥକା ମାରି ଠିଆହୋଇ ଗୃହଆଡ଼େ ଅନାଇଲା, ଆଗକୁ ମାଡ଼ି ଚାଲିଗଲା, ପୁଣି ଫେରି ଆସି ଠିଆ ହୋଇ ଏଣେ ତେଣେ ଚାହୁଁଛି, ଏତିକିବେଳେ ଦଳବେହେରା ଆସି ପହଞ୍ଚିଲେ । ନାଉରୀ ତାଙ୍କୁ ପ୍ରଣାମ କଲା ଜଣେ ସାଧୁ ମନେ କରି )

ନାଉରୀ—ବାବାଜୀ ଗୋସେଇଁ ! ଗଡ଼ ମାଣିଭରୀଙ୍କ ବାଟ କୁଆଡ଼େ ଜାଣିଛନ୍ତି କି ? ଏଇଠି ଦୋବାଟିଟା ପଡ଼ୁଛି ଯେ କୁଆଡ଼କୁ ଯିବି, ଜାଣି ପାରୁ ନାହିଁ ।

ଦଳ—ତୁମେ କଅଣ ମାଣିନୀ ଯିବ ?

ନାଉରୀ—ଆଜ୍ଞା ହଁ ।

ଦଳ—କାହିଁକି ? କଅଣ କାମ ଅଛି ?

ନାଉରୀ – ଆଜ୍ଞା, ବଡ଼ ଗରିବ ମୁଁ, ଖାଇବା ପିନ୍ଧିବା କଥା ତେଣିକି ଥାଉ, ଟିକିଏ ମୁଣ୍ଡ ଗୁଞ୍ଜିବାକୁ ଠାବ ନାହିଁ ମୋର । ନଈକୂଳେ କୁଡ଼ିଆ ଖଣ୍ଡିଏ ମାତ୍ର ଆମେ ଦି ପ୍ରାଣୀ ଥିଲୁ ଯେ; ଗୁହାଣୀ ଛପର କରି ପାରିଲି ନାହିଁ, ଚାଳଯାକ କଣା, ବାହାରେ ନ ପଡ଼ୁଣୁ ମେଘ ଘରେ ବରଷୁଛି । ୫ । ୭ ଜଣିଆ ଗୋଷ୍ଠ ଡଙ୍ଗା ଖଣ୍ଡିଏ ଥିଲା । ମହାରୀ ପାରି ପ୍ରାଣୀର

କରି କଛି କଛି ପାଉଥିଲ । ସେଇଥିରେ ଡୋକେ ପିଇ—ଦଣ୍ଡେ ଖାଇଁ କରି ଚଳି ଯାଉଥିଲି । ଦାଇବ ବେଡ଼ ଉପରେ କୋରଡ଼ା ମାରିଲ ।

ଦଳ—କଅଣ ହେଲ ? କଏ ନେଇଗଲ ତମ ଡଙ୍ଗା ଖଣ୍ଡିକ ?

ନାଉରୀ—ନାଇଁ ଆଜ୍ଞା ! ଆଉ କଏ ନଅନ୍ତା, ସେ ଦଦରା ନାଆଟାକୁ । ନେଲବାଲ ଏକା ଦାଇବ । ଦୁଃଖୀ ରଙ୍କିଙ୍କ ତଣ୍ଟିରେ ଖୋଜ ପକେଇବାକୁ ଆଉ ପୁଣି ଏମିତି ଜଣେ କଏ ଅଛି ?

ଦଳ—କଅଣ ହେଲ ତେବେ ?

ନାଉରୀ—ନଈବଢ଼ି ତ ଏବର୍ଷ ବଡ଼ ପ୍ରବଳ ହେଲ । ସଞ୍ଜବେଳେ ଘାଟମୁଣ୍ଡେ ଡଙ୍ଗା ବାନ୍ଧ ଦେଇ ଆସିଥିଲି । ଘର ଝଡ଼ ବର୍ଷା ହେଲ । ଦିନଟାଏ ଆଉ ମୁଁ ଯାଇ ପାରିଲି ନାହିଁ । ପାଣି ସୁଅରେ ନାଆଟି କୁଆଡ଼େ ଭସିଗଲ । ସାତଦିନ ହବ ମୁଁ ତଳମାଳ ଯାଇ ନଈ କୂଳେ କୂଳେ ଉପାସ ଭୋକରେ ଖୋଜି ବୁଲିଲି । କାନମୁଣ୍ଡା ଆଉଁସି ଲୁନହେଇ ରହିଲି । ଆଉ କଅଣ କରିବ ବୁଦ୍ଧି ବାଟ କଛି ଦିଶୁନାହିଁ ।

ଦଳ—ତେବେ ଆଉ କଅଣ ଭାବୁଚ ? ମାଣଖୀ କାହିଁକି ବାହାରି ଥିଲ ?

ନାଉରୀ—ଆଜ୍ଞା, ଦଳବେହେରାଙ୍କ ପାଖକୁ ଟିକଏ ଯିବ । ଗଢ଼େଇ ଚଉଗୁଣୀ ପେଟ ଚଳିଲବାଲ ସେ । ମୂଳକରେ ନାଆଁ ପଡ଼ିଛି ତାଙ୍କର, ତାଙ୍କୁ ମାଗିବ । କଉଡ଼ି କଛି ହେଲେ ପୁଣି ଖଣ୍ଡିଏ ଡଙ୍ଗା ଗଢ଼େଇ ଚଳାଚଳ ହେବ । ଜୀବ ଥିଲ ଯାକେ ତ ଏ ପୋଡ଼ା ପେଟ ଅଛି ! ଦଳବେହେରାଙ୍କ ପାଖରୁ ପଦେ ହଁ, କି ନାହିଁ ଶୁଣିଲେ ତେଣିକି ଯାହା କର୍ମରେ ଥିବ ।

ଦଳ—ଆହା ! ନାଉଁରି ଭାଇ ! ତୁମେ କଅଣ କହୁ ଶୁଣି ନାଁ ଦଳବେହେର ତ ଆଉ ନାହାନ୍ତି ।

ନାଉରି—ନାହାନ୍ତି ? ଦଳବେହେରା ନାହାଁନ୍ତି ? ଏ ରାଜ୍ୟରୁ ଦେବତା ପୁରୁଷ ବି ଛାଡ଼ିଗଲେ । ବୁଡ଼ିଗଲା, ବୁଡ଼ିଗଲା ଧର୍ମ । କଅଣ ହୋଇଥିଲା ତାଙ୍କର ଆଜ୍ଞା ? ଆମପରି ଜୀବନ—ନିତି ଆମେ ମରିବାକୁ ଖୋଜୁଛୁ—ଆମକୁ ଯମ ନେଉନାହିଁ । ବାଛି ବାଛି କରି ଭଲତକ ଯାଉଛନ୍ତି !

ଦଳ—ତାଙ୍କୁ ପରି କମାଣି ପାଇବ ଧରାଇ ନେଲଣି । ତୁମେ ଆଉ ବ୍ୟସ୍ତ ହୁଅନାହିଁ । ତୁମକୁ ଆଉ ଗୋଟିଏ ସ୍ଥାନକୁ ନେଇଯିବି, ଛୁଟି ପାଇବ । ଡଙ୍ଗାଟିଏ ଗଢ଼େଇ ନେବ । ଆସ, ମୋ ସଙ୍ଗରେ ଆସ ।

ନାଉରି—ଆଜ୍ଞା । କୋଉ ଦେବତା ଆପଣ ? ଦେବା ଲୋକ ତ ଗଲେ, ଆଉ ପୁଣି କିଏ ଅଛି ଦଳବେହେରାଙ୍କ ପରି ଯେ, ଦୁଃଖୀରଙ୍କିଙ୍କ ପେଟ ଚଳିବ ? ହଉ, କହୁଛନ୍ତି, ଚାଲନ୍ତୁ ।

ଦଳ—ଆସ, ଆସ, ଲଉଡ଼ି ମିଳିବ ତମକୁ, ଆସ ।

( ଦୁହେଁ ଆଗପଛ ହୋଇ ଚାଲିଗଲେ )

---

## ଅଷ୍ଟମ ଦୃଶ୍ୟ

[ ସ୍ଥାନ—ଖୋରଧା, କମ୍ପାନିର କଚେରି । ଶାସକ ତାଙ୍କ ଆସନରେ ବସିଛନ୍ତି । କର୍ମଚାରୀ, ନାଏବ ଇତ୍ୟାଦି ଠିଆ ହୋଇଛନ୍ତି । ]

ନାଏବ—ମାଣିଷ୍ଟା ଦେଖା ଦେଖି ଆହୁରି ଗୃହଖଣ୍ଡି ପାଖାପାଖି ପାଇକାଳି ଗାଆଁ ଖଜଣା ଦେବେ ନାହିଁ ବୋଲି ଜିଦ ଧରି ବସିଲେଣି । ଦିନକୁ ଦିନ ତ ଏ ନିଆଁ ଜଳିଲା, ହଜୁର ।

ଯାଦେବ—( ରାଗି ) ସମସ୍ତେ ତ ସେଇ କଥା କହୁଛ । ଆମେ ତ ପାଞ୍ଚଶ ଟଙ୍କା ପୁରସ୍କାର ଦେବାକୁ ଘୋଷଣା କଲୁଁ । ଗାଆଁ ଗାଆଁକେ ନାଗରା ବଜାଇଲୁଁ । ଗୋଟାଏ ଲୋକକୁ କେହି ଧରି ପାରୁନାହିଁ ! ସମସ୍ତେ କହୁଚ—ସେଇ ଏ ନିଆଁ ଜାଳୁଚି । ସେ ଏ ମେଳର ମୂଳ । ତାର ମୁଣ୍ଡ କାଟି ଆଣ, ପୁରସ୍କାର ନିଅ । କମ୍ପାନି ସରକାର ତ ଏ କଥା ସଫା କହି ଦେଇଚି । ସେତେ ଅଛ ସବୁ ଗଧ । ଗୋଟାଏ ଲୋକକୁ ଧରି ପାରୁନାହିଁ ? ଆଉ ମୋ ଆଗରେ ଆସି କଥା କହୁଚ, ନାଏବ ବାବୁ ! ଲଜ୍ଜା ନାହିଁ ତମମାନଙ୍କୁ ?

ନାଏବ—ହଜୁର ! ଖରା, ବର୍ଷା, ଶୀତ, କାକର ସହି ତ ଆମ ସିପାହୀ ପିଆଦା ବଣ, ପାହାଡ଼, ଗାଆଁ ଗଣ୍ଡା ଖୋଜିବାରେ ଲାଗିଛନ୍ତି । କିଏ କହୁଚି ଆଜି ଏଠି ମେଳିଆମାନଙ୍କୁ ଦେଖିଛୁ । କିଏ କହୁଚି—କାଲି ସେଠି ମେଳିଆମାନଙ୍କ ଭେଟିଛୁ ।

ଦଳବେହେରାର ତ ପନ୍ଥ ମିତ୍ରନାଶ୍ରୀ । ଆମ ଲୋକେ ଥକି ଗଲେଣି ଖୋଜି ଖୋଜି ।

ଶାସକ—ଆଜ୍ଞା କଅଣ ସେ ପବନରେ ଉଡ଼ି ବୁଲୁଛି ? ମଣିଷଟାଏ ତ ! କୋଉଠି ହେଲେ ଥିବ । କେହି ମନ ଦେଇ କାମ କରୁନାହାନ୍ତି । ଖାଇପିଇ ଆପଣା ଘରେ ଶୋଇଛନ୍ତି । କେହି ତାକୁ ଖୋଜୁ ନାହାନ୍ତି, ନୋହିଲେ ତା ସଙ୍ଗରେ ଆମ ଲୋକଙ୍କର ମେଳ ଅଛି ।

ନାଏବ – ହଜୁର, ତା ନୁହେଁ । ଦଳବେହେରା ବଡ଼ ଚତୁର । ଧରା ପଡ଼ିବା ସହଜ ନୁହେଁ ।

ଶାସକ—ଏ କଥା ତ ଦେଖୁଛୁଁ ଆମେ ।

(ନାଉରୀ ସହ ଦଳବେହେରା ଆସି ପହଞ୍ଚିଲେ)

ଦଳ – ସାହେବ ! ମୋର କିଛି କହିବାର ଅଛି ।

ଶାସକ – କିଏ ତୁମେ ?

ଦଳ – ମୁଁ ଏହି ରାଜ୍ୟର ଜଣେ ପ୍ରଜା ।

ଶାସକ – ତୁମେ ଜଣେ ସାଧୁ – ବାବାଜୀ । ତୁମର କଅଣ କହିବାର ଅଛି ? ଆଚ୍ଛା କହ ।

ଦଳ—(ନାଉରୀକୁ ଦେଖାଇ) ଏ ଜଣେ ନାଉରୀ । ବିଚରା ବଡ଼ ଗରିବ । ଖଣ୍ଡିଏ ଛୋଟ ନାଆ ଥିଲା ତା'ର । ତାକୁ ଚଳାଇ କିଛି କିଛି ପାଉଥିଲା । ନଈବଢ଼ି ପାଣିରେ ନାଆଖଣ୍ଡି କୁଆଡ଼େ ଭସି ଯାଇଛି ।

ଶାସକ—ତେବେ ଆମେ କଣ କରିବୁଁ ? ତାର ନାଆ କୋଉଠି ଅଛି ଖୋଜି ଆଣିବୁଁ ?

ଦଳ—ଶୁଣନ୍ତୁ ଆଗେ ମୋ କଥା ।

ଶାସକ —ଆଜ୍ଞା କଅଣ କହୁଛ ? ଗରିବ ତ ରାଜ୍ୟରେ ଏସବୁ

ଅନେକ ଅଛନ୍ତ । କମ୍ପାନୀ ବାହାଦୂର କଅଣ ସମସ୍ତଙ୍କ ଖାଇବା ପିଇବା ପାଇଁ ଧର୍ମଶାଳା ଖୋଲିବ ?

ଦଳ—ମୁଁ ତା କହୁନାହିଁ । ଏ ଗରିବଟିର ଘରଦ୍ୱାର ବ ନାହିଁ ।

ଶାସକ—ତା' ବୋଲି କଅଣ ସାହେବ ତ ଘରଦ୍ୱାର ତୋଳି-ଦେବେ ? ତୁମେ ତ ସାଧୁ ଲୋକ; ବାବାଜୀ ହୋଇଚ, ମନ୍ତ୍ରବଳରେ ତାକୁ ବଡ଼ଲୋକ କରିଦିଅ ।

ଦଳ—କଥାଟା ଶୁଣନ୍ତୁ । ଏ ଲୋକଟି ଆଜି କଛୁ ଆଶ୍ରା ନ ପାଇ ମାଣିକୀ ଯାଉଥିଲା ।

ସାହେବ—ମାଣିକୀ ! ଦଳବେହେରା ମାଣିକୀ ।

ଦଳ—ହଁ ସାହେବ ! ସେହି ମାଣିକୀ ଗଡ଼ ।

ସାହେବ—ଆଚ୍ଛା, ଆଚ୍ଛା, ତା ପରେ ? ସେ ବଦମାସ ଦଳ-ବେହେରାକୁ ଦେଖିଚ୍ଛି ଏ ଲୋକ ?

ଦଳ—ନା, ଏ ଲୋକ ମାଣିକୀ ଯାଉଥିଲା, ବାଟ ନ ପାଇ ମୋତେ ପଚାରିଲା ।

ସାହେବ—କାହିଁକି ଯାଉଥିଲା ମାଣିକୀ, ମେଳ କରିବାକୁ; ନାଁ ?

ଦଳ—ମାଣିକୀ ଦଳବେହେରା ରାଜ୍ୟର ଦୁଃଖୀ ଦରିଦ୍ରଙ୍କୁ ସାହାଯ୍ୟ ଦିଅନ୍ତି ବୋଲି ସେ ଶୁଣିଚ୍ଛି । ତେଣୁ ଯାଉଥିଲା ଦଳ-ବେହେରାଙ୍କ ପାଖକୁ ।

ସାହେବ—(ରାଗି) ଦଳବେହେରା ! ଦଳବେହେରା ! ଦଳ-ବେହେରା ! ସମସ୍ତେ ତା'ର କଥା କହୁଚ । କେହି ଧରି ଦେଇ ପାରୁନାହଁ ? ପାଞ୍ଚଶ ଟଙ୍କା,—ପାଞ୍ଚଶ ଟଙ୍କା କମ୍ପାନୀ ବାହାଦୂର ପୁରସ୍କାର ଦେବେ । ନାଉରୀ ଦଳବେହେରାକୁ ଧରି ଆଣୁ । ପୁରସ୍କାର ପାଇବ ।

ଦଳ—ସାହେବ; କଅଣ ସତରେ ପୁରସ୍କାର ଦେବେ ?

ସାହେବ—ହାଁ, ହାଁ, ଜରୁର ।

ଦଳ—ତେବେ ଏ ନାଉରୀଙ୍କୁ ହଅନ୍ତୁ । ସେ ଦଳବେହେରାଙ୍କୁ ଧରି ଆଣିଛି ।

ସାହେବ—( ହଠାତ୍ ଚୌକି ଛାଡ଼ି ) ଧରି ଆଣିଛି ? ଏ ନାଉରୀ ଧରି ଆଣିଛି ଦଳବେହେରାଙ୍କୁ ? ସିଂହକୁ ବାନ୍ଧି ପାରିଛି ଏଇ ଲୋକ ? କାହିଁ ସେ ଦଳବେହେରା ?

ଦଳ—ଆପଣ ପୁରସ୍କା ଟଙ୍କା ଏଠିକି ଆଣନ୍ତୁ, ମୁଁ କହି ଦେବି ।

ସାହେବ—ନାଏବ ବାବୁ !

ନାଏବ—ହଜୁର !

ସାହେବ—ପାଞ୍ଚଶ ଟଙ୍କା ମାଲଖାନାରୁ ଆଣ ।

ନାଏବ—ହଜୁର ( ଚାଲିଗଲେ ) ।

ଦଳ—ଏ ଗରିବ ନାଉରୀକୁ ପାଞ୍ଚଶ ଟଙ୍କା ଦେଇ ଦେବେ, ସାହେବ ! ସେ ଦଳବେହେରାଙ୍କୁ ଧରି ଅଣିଛି ।

ସାହେବ—କାହିଁ ? କାହିଁ ସେ ଦଳବେହେରା ?

ଦଳ—ଆପଣଙ୍କ ଆଖି ଆଗରେ ସାହେବ ! ମୁଁ ସେହି ଗଡ଼ ମାଣିକ୍ୟ ଦଳବେହେରା, ଯାହା ମୁଣ୍ଡ ବଦଳରେ ଆପଣ ପାଞ୍ଚଶ ଟଙ୍କା ଦେବାକୁ କହିଛନ୍ତି, ସେଇ ମୁଁ ।

ଶାସକ—( ଓହ୍ଲାଇ ଆସି ଦଳବେହେରା ହାତ ଧରି ପକାଇ, ଝିଙ୍କାଇ ଦେଇ ) ତୁମେ ? ତୁମେ ସେଇ ଦଳବେହେରା ? ଏତେ ମହତ୍ ତୁମେ ?

( ନାଏବ ଟଙ୍କା ଆଣି ପହଞ୍ଚିଲେ )

[ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ । କେଉଟ ଦଳବେହେରାଙ୍କ ଗୋଡ଼ ତଳେ ପଡ଼ିଗଲା—ତା ଆଖିରୁ ଝରଝର ଲୁହ ବହୁଚି ]

କେଉଟ—( ଭେ ଭେ କାନ୍ଦି ) ସାଆନ୍ତ ! ଦେବତା ! ଏ କଅଣ କଲ ?

---

## କୁଶୀଲବ :

ଗୋବିନ୍ଦବାବୁ—ଆସେମ୍ବ୍ଲି ମେମ୍ବର
ରାମବାବୁ—ଗୋବିନ୍ଦବାବୁଙ୍କ ଷ୍ଟେନୋ
ବିନୟବାବୁ—କବି
ଲୋକନାଥ—ନାଗରିକ
ମିସେସ୍ ଦାସ—ପ୍ରଗତିଶୀଳା ଶିକ୍ଷିତା ରମଣୀ
ରେଣୁ—ଗୋବିନ୍ଦବାବୁଙ୍କ ବନ୍ଧୁକନ୍ୟା

---

## ପ୍ରଥମ ଦୃଶ୍ୟ

[ ସହରର ଏକ ପ୍ରାନ୍ତ ଗୋବିନ୍ଦବାବୁଙ୍କ ବାହାର ମେଳ । ବୈଠକଖାନା ଓ ପାଠାଗାର ଏକତ୍ର । ପାଖଘରୁ ଟାଇପ ହେଉଥିବା ଶବ୍ଦ ଶୁଭୁଛି । ଗୋବିନ୍ଦବାବୁ ଖଣ୍ଡିଏ ଚିଠି ପଢ଼ୁଛନ୍ତି ।]

ଗୋବିନ୍ଦ—ଆଃ ! ଡାକଲେ ଶୁଣିଲ ନାହିଁ ରାମବାବୁ ! ଆଖିର ପାହାଡ଼କୁହିଁ ଯିବାକୁ ପଡ଼ିବ ମହାତ୍ମାଙ୍କ ପାଖକୁ ।

ରାମ—ନାହିଁ ଆଜ୍ଞା, ଖାଲି ଏଇ ଫାଲଟା ସାରିଦେଇ,—ମାନେ ଟାଇପ୍ ସରିବା ଉପରେ ପ୍ରାୟ, ଧାଡ଼ିଟାଏ—ଅଧାଧାଡ଼ିଏ— ୨।୪ଟା ଶବ୍ଦ ଆଉ ସାର ! (ଟାଇପ୍ ଶବ୍ଦ ଶୁଭୁଥାଏ )

ଗୋବିନ୍ଦ—ମୁଁ ଜାଣେ, ସେ ଶବ୍ଦ ସରିବାର ନୁହେଁ—ସରିବ ନାହିଁ । ମୁଁ ସରିବ, ତୁମେ ସରିବ—ସାରା ଭାରତ ସରିବ, ତା ପରେ ହୁଏତ···ଦେଖନା, ଶ୍ରୀମତୀ—ମାନେ ମିସେସ୍ ଦାସ କଅଣ ଲେଖିଛନ୍ତି—ପଢ଼ । ଆସ ।

( ବାହାରେ କଡ଼ା ହଲାଇବା ଶବ୍ଦ )

କିଏ ?

ମିସେସ୍ ଦାସ—ମୁଁ ଯାଇପାରେ ଭିତରକୁ ?

ଗୋବିନ୍ଦ—ଆସନ୍ତୁ !

(କାଗଜ ଧରି ରାମ ପ୍ରବେଶ—ଅନ୍ୟ ଦିଗରୁ ମିସେସ୍ ଦାସ ପ୍ରବେଶ)

ଗୋବିନ୍ଦ—ଆଃ ! ତୁମକୁ ନୁହେଁ, ତାଙ୍କୁ ।

ମି! ଦାସ—ଓଃ, କ୍ଷମା କରିବେ ( ଫେରି ଯାଉଥିଲେ ) ।

ଗୋବିନ୍ଦ—ନା, ନା—ଆପଣ ବୁହନ୍ତୁ, ଆପଣ ବୁହନ୍ତୁ—ସେ
( ରାମଙ୍କ ପ୍ରତି )

ରାମ—ଏଗୁଡ଼ାକ ତା ହେଲେ—

ଗୋବିନ୍ଦ—ପରେ । ଥାଉ—ପ୍ରଥମେ ଭଦ୍ରମହିଳା ! ଏ ଜ୍ଞାନ ବି
ନାହିଁ ! ହାୟରେ ହତଭାଗ୍ୟ ଦେଶ !
( ରାମ ଚାଲିଗଲେ—ଗୋବିନ୍ଦ ମିସେସ୍ ଦାସଙ୍କୁ ଚାହିଁ )
ହିଁ, ବୁହନ୍ତୁ, ବସନ୍ତୁ ମିସେସ୍ ଦାସ ! ମୁଁ ଆପଣଙ୍କର କ
ସାହାଯ୍ୟରେ ଲାଗିପାରେଁ ? ( ମି: ଦାସ ବସିଲେ )

ମି: ଦାସ—ନାଁ, ମୁଁ ଟିକଏ ଆସିଥିଲି ।

ଗୋବିନ୍ଦ—ହିଁ, ମୁଁ ଜାଣେ, ଆପଣ ଆସିଛନ୍ତି । ଆସନ୍ତେ,
ଆସିବାର କଥା—ଆସିବେ । ଟିକଏ କାହିଁକି ? ଥରେ
କାହିଁକି ? ବରାବର, ସର୍ବଦା, ଆପଣ ଯେ ଦେଶର, ଜାତିର
ନେତ୍ରୀ । ମୁଖ ଉଜ୍ଜ୍ୱଳ କରିବେ ଆମର ଆପଣ ! ସ୍ୱାଧୀନ
ଜାତିର ଆପଣମାନେଇ ହେଲେ—ମାନେ··· ।

ମି: ଦାସ—( କାନରେ ହାତ ଦେଇ ) ଅସହ୍ୟ ଅସହ୍ୟ, ଏସବୁ
ଗୋବିନ୍ଦ ବାବୁ ! ହୁଏତ ଦେଶତ୍ୟାଗ; ନଚେତ୍ ଆତ୍ମହତ୍ୟା !

ଗୋବିନ୍ଦ—( ଚମକି ) ଏଁ ଆତ୍ମହତ୍ୟା ! ଛି, ଛି, ମହାପାପ !
ମହାପାପ !

ମି: ଦାସ—( କାନରେ ହାତ ଦେଇ ) ଓଃ ! ଏ ଶବ୍ଦଟା କଅଣ
ଆପଣମାନଙ୍କର ଏକାବେଳକେ ମୁଖସ୍ଥ !

ଗୋବିନ୍ଦ—ମାନେ ?

ମି: ଦାସ—ମାନେ—ଏଇ କହିଲେ ନାଁ—ମହାପାପ ! ଏଇ ଶବ୍ଦଟା

ଆପଣମାନେ ପାଶୋର ନ ଦେବା ପର୍ଯ୍ୟନ୍ତ ଆମର ଉନ୍ନତି ନାହିଁ ।

ଗୋବନ୍ଦ—ଆପଣ କଅଣ କହୁଛନ୍ତି ଶ୍ରୀମତି—

ମି: ଦାସ—ମିସେସ୍ ଦାସ ।

ଗୋବନ୍ଦ—ହିଁ, ମିସେସ୍ ଦାସ !

ମି: ଦାସ—ଧରନ୍ତୁ, ମୁଁ କ୍ଲବ୍‌କୁ ଯିବ ।

ଗୋବନ୍ଦ—ବେଶ୍ ତ । ଯାଆନ୍ତୁ ନା । ରାଧୁଆ ! ରାଧଆ, ଆରେ ଖଣ୍ଡେ ରିକ୍‌ସା—ଶୀଘ୍ର । ଏଇ ସାମାନ୍ୟ ସାହାଯ୍ୟଟା···

ମି: ଦାସ—ନା, ନା । କଥାଟା ମୋର ସଣନାହିଁ ଯେ ।

ଗୋବନ୍ଦ—ଓ, ବର୍ତ୍ତମାନ ଯାଉନାହାନ୍ତି ତା ହେଲେ ! ବେଶ୍, ରାଧୁଆ, ଥାଉ, ଯିବେ ନାହିଁ ।

ମି: ଦାସ—କମିତି ଯିବ ? ମୁଁ ଟିକଏ ବର୍ତ୍ତମାନ ମୋ ବନ୍ଧୁମାନଙ୍କ ସାଙ୍ଗରେ ଦୁଏତ ବଣଶ୍ରେକରେ ବାହାରିବ ।

ଗୋବନ୍ଦ—ଏ ତ ସ୍ୱାସ୍ଥ୍ୟକର ପ୍ରସ୍ତାବ । ଅତି ଭଲ କଥା । କନ୍ତୁ ବନ୍ଧ କଟା ନିଶ୍ଚୟ ସଙ୍ଗରେ ନେବାକୁ ଭୁଲିବେନାହିଁ—ଆଉ ତା ଛଡ଼ା—ଟେଳି—ଟେଳି ଲାଇଟ ।

ମି: ଦାସ—ଆପଣ କଥାଟା ଆଗେ ନ ଶୁଣି—

ଗୋବନ୍ଦ—ଓ, କହନ୍ତୁ । ମୁଁ କ ସାହାଯ୍ୟରେ ଲାଗିପାରେଁ ଆପଣଙ୍କର ? ଅନ୍ତତଃ ବଣଶ୍ରେକ ପାଇଁ ଯଦ—

ମି: ଦାସ—ଧନ୍ୟବାଦ । କନ୍ତୁ ମୋ ଯିବାରେ ଯେ ବହୁତ ବାଧା ।

ଗୋବନ୍ଦ—ବାଧା ? କାହିଁକ ?

ଦାସ—କାହିଁକ ? ଏଇଟା ମହାପାପ ବୋଲ ! ଆପଣମାନଙ୍କର—ମାନେ ପୁରୁଷ ଜାତର—ଏଇଟା ଗୋଟାଏଦୁଆ—ପତି ପରମ ଗୁରୁ—ତେଣୁ ଘରର ଗୃହକୋଣ ଛଡ଼ା ଗତି ନାହିଁ ନାରୀର ।

ସେ ଦାସୀ—ସେ ଗୃହଲକ୍ଷ୍ମୀ—ସେ ଖେଳନା—ସେ ମାଟିର କଣ୍ଢେଇ, ଝ'ଲ—ଓ'ଲ ।

ଗୋବିନ୍ଦ—ରାମ, ରାମ ! ଏକଥା କିଏ କହିଲା ? ସ୍ୱାଧୀନ ଦେଶ, ସମାଜରେ ନାରୀ ଓ ପୁରୁଷର ସମାନ ଅଧିକାର । ନାରୀ ଚତୁଷ୍ପଦ ଜୀବ ନୁହେଁ । ନାରୀ ବନ୍ଦିନୀ ନୁହେଁ । ଶ୍ୱାସରୁଦ୍ଧ ହୋଇ ଘର କୋଣରେ ସିଝି ସିଝି ମରିବା ପାଇଁ ଜନ୍ମ ନୁହେଁ ତା'ର । ସେ ମାତା । ଭବିଷ୍ୟତ ବଂଶର ଜନନୀ !

ଦାସ—ଏ ସବୁ ଆପଣଙ୍କର ମୁହଁର କଥା । ମଞ୍ଚର ବକ୍ତୃତା । କାର୍ଯ୍ୟରେ କଅଣ ଏ ସବୁ ଘଟେ କେବେ ?

ଗୋବିନ୍ଦ—ନିଶ୍ଚୟ, ନିଶ୍ଚୟ । ତା ନ ହେଲେ ଆମେ ସ୍ୱାଧୀନ ହେଲୁ କାହିଁକି ?

ଦାସ—ଆଚ୍ଛା, କହନ୍ତୁ ତ । ଆପଣ ଖଦଡ଼ ପିନ୍ଧିବେ, ତା ବୋଲି ମୁଁ ମନମାଫିକ୍ ଖଣ୍ଡେ ଶାଢ଼ୀ ପିନ୍ଧିବି ନାହିଁ ? ଆପଣ କ୍ଲବକୁ ନ ଯିବେ, ତା ବୋଲି ମତେ ରୋକିବେ ? ହୁଏତ ମୁଁ କୌଣସି ବନ୍ଧୁଘରୁ ଫେରୁ ଫେରୁ ଟିକିଏ ଡେରି ହେଲା, ଆପଣ ହାକିମଙ୍କ ପରି ହାଜିରା ନେବେ ମୋର ? କୈଫିୟତ ତଲବ କରିବେ ? ଆମର ନାଗରିକ ସ୍ୱାଧୀନତା ଉପରେ ବାଧା ଦେବେ ? ଆପଣ ଯେଉଁଠିକି ଯିବେ, ମୁଁ ସେହିଠିକି ଯିବି—ଆପଣ ଯେପରି ଚଳିବେ, ମୁଁ ଠିକ୍ ସେହିପରି ଚଳିବି ? ନାରୀର ମନ ନାହିଁ—ଜୀବନ ନାହିଁ । ବରାବର ତାକୁ ପୁରୁଷର ଆଦେଶ ମାନି ଚଳିବାକୁ ହେବ ! ତା ନ ହେଲେ ତାର ନାରୀଧର୍ମ ପୋଡ଼ି ପାଉଁଶ ହେଲା ! ସେ ମହା ପାପ କଲା ! ନାରୀର ଜନ୍ମସାରା ସେ କଅଣ ପୁରୁଷର ଦାସୀ ! ଏଇ ଯଦି ହୁଏ ସମ୍ମାନ, ଏଇ ଯଦି ହୁଏ ଧର୍ମ୍ମ;—ସେ ଜାତିକୁ,

ଯେ ଦେଶକୁ ନମସ୍କାର । ଘୃଣାକରେ ମୁଁ ସେ ସମାଜକୁ, ସେ ଧର୍ମ୍ମକୁ ! ଆଜ ଯଦି ମୋର କ୍ଷମତା ଥାଆନ୍ତା, ମୁଁ ଯଦି ଆପଣଙ୍କ ପରି ବ୍ୟବସ୍ଥାପକଙ୍କର ମେମ୍ବର ହୋଇଥାନ୍ତି, ତେବେ କଅଣ କରନ୍ତି, ଜାଣନ୍ତି ?

ଗୋବିନ୍ଦ—ବୁଝିଲି—ଆଇନ୍, ଆଇନ୍ ।

ମିଃ ଦାସ—ହଁ, ସ୍ୱାଧୀନ ସରକାର ବୋଲି ଗଳା ଫଟାଇ ଚିତ୍କାର କରି ଜାଣନ୍ତି ଆପଣମାନେ, କିନ୍ତୁ······

ଗୋବିନ୍ଦ—କିନ୍ତୁ; ଏପର୍ଯ୍ୟନ୍ତ ଏଭଳି ଏକ ଗୁରୁତର ବିଷୟ ଯେକି କେହି ମଥା ଖେଳାଇ ନାହାଁନ୍ତି । ଧନ୍ୟବାଦ ଆପଣଙ୍କୁ ଶ୍ରୀମତୀ—

ମିଃ ଦାସ—ମାନେ ମିସେସ୍ ଦାସ୍ ।

ଗୋବିନ୍ଦ—ଆଜ୍ଞା, ହଁ । ମିସେସ୍—ଧନ୍ୟବାଦ ଯେ ଆପଣ ମୋତେ ଉପଯୁକ୍ତ ସମୟରେ ଯୁକ୍ତିଯୁକ୍ତ ପ୍ରେରଣା ଦେଲେ । ଆଇନ୍ ପାଶ୍ କରାଇ ନେବାକୁ ହେବ । ନାରୀ ଜାତି ଉପରେ ପୁରୁଷ ଜାତିର ଏପରି ଅଯଥା ଅଧିକାର ବିରୁଦ୍ଧରେ । ତା ନ ହେଲେ—ମୁଁ ବୁଝୁଛି—ବେଶ୍ ବୁଝୁଛି—ଏ ଦେଶ ରସାତଳକୁ ଯିବ । ଏ ସର୍କାର ଥାଇ କି ଲାଭ ! ଏ ଭଳି ଦେଶରେ ଜନ୍ମ ହେବା ମହାପାପ ।

ମିଃ ଦାସ—କିନ୍ତୁ ଆପଣ ଫେର୍ ସେଇ ଶବ୍ଦ···

ଗୋବିନ୍ଦ—କ୍ଷମା କରନ୍ତୁ ଶ୍ରୀମତୀ—

ମିଃ ଦାସ—ନା, ନା, ମିସେସ୍—

ଗୋବିନ୍ଦ—ଓ, ଦାସ, ମୁଁ ନୋଟକରି ରଖୁଛି, ଏଇ ବୈଠକରେ—ରାମବାବୁ ଓ ରାମବାବୁ ! ଟିପି ରଖନ୍ତୁ ତ ।

( ବାହାରେ କଡ଼ା ହଲାଇବା ଶବ୍ଦ )

କଏ ? ହଁ, ଶ୍ରୀମତୀ, ମାନେ ମିସେସ୍ ଦାସ—କଥାଟା ଚିପିଦେଇ ଯାଆନ୍ତୁ ତ ଟିକଏ ଷ୍ଟେନୋବାବୁଙ୍କୁ ଦୟାକରି । ମାନେ ଖାଲି—ମୁଁ ତାଙ୍କୁ ଭାଷା ଦେବି ।

ମି: ଦାସ—କାଲୁ କଥାଟା ଯେମିତି···

ଗୋବିନ୍ଦ—ନିଶ୍ଚୟ ·ଆଇନରେ ପରିଣତ ହେବ । ଦେଖିନେବେ ଆପଣ । ଏ ଆଇନ ନ ହେଲେ ପୁରୁଷ ଜାତିର ଅତ୍ୟାଚାର କ୍ରମେ ବଢ଼ି ଚାଲିବ । ସମାଜ ଯିବ ରସାତଳକୁ । ଆପଣ ନିଶ୍ଚିନ୍ତ ରହନ୍ତୁ ଶ୍ରୀମତୀ—ମାନେ ମିସେସ୍—ନମସ୍କାର ।

ମି: ଦାସ—ନମସ୍କାର । (ଚାଲିଗଲେ ଭିତରକୁ । ପୁଣି କଡ଼ା ଶବ୍ଦ)

ଗୋବିନ୍ଦ—ହଁ ଆପଣ ଆସିପାରନ୍ତି ବର୍ତ୍ତମାନ !

( ପ୍ରବେଶ କଲେ ବନସ୍ପ ବାବୁ )

( ଚୌକି ଛାଡ଼ି ) ଆରେ, ଆରେ, ଆପଣ ଆସି କଡ଼ା ହଲାଉଥିଲେ ? କି ଦୁର୍ଭାଗ୍ୟ ! ଏ ଘରଦ୍ୱାର ଯାହାଙ୍କର, ଆଜି ଯାହାଙ୍କଲାଗି ଆଜି ଏ ଗୋବିନ୍ଦ ଆସେମ୍ବ୍ଲିର ଜଣେ ଅନରେବ୍ଲ ମେମ୍ବର, ସେ ଆସି—କଅଣ ନା, ବାହାରେ ରହି ଦୁଆରରେ କଡ଼ା ହଲାଇବେ ! ଏଥିଠୁ ବଳି ମନ୍ଦଭାଗ୍ୟ କଅଣ ହୋଇପାରେ ? ନମସ୍କାର, ନମସ୍କାର, ବସନ୍ତୁ ! ବସନ୍ତୁ । ଆପଣଙ୍କର କଅଣ ଠିଆ ହୋଇ ରହିଛନ୍ତି ? ଆଉ ଲଜ୍ଜା ଦେବେ ନାହିଁ, ବନସ୍ପବାବୁ ! ବସନ୍ତୁ । ଆରେ ଶୁଣୁଚ, ବନସ୍ପ ବାବୁ ଆସିଛନ୍ତି, ଚ'—

ବନସ୍ପ—ନା, ବାବୁ ! ତାତି ଉପରେ ଆଉ ଗରମ ପାଣି ! ମାନେ ଫୋଟକା ! ଥାଉ । ମୁଁ ଗୋଟେ ବିଶେଷ ଜରୁରୀ କାର୍ଯ୍ୟରେ ଆସିଛି ।

ଗୋବିନ୍ଦ—ମୁଁ ତ ଆଜି ଯାଇଥାନ୍ତି—ପ୍ରାୟ ବାହାରିଥିଲି । ପଅର ଦିନ ରାତିରେ ମହିଳା-ମାନରକ୍ଷଣ ମିଟିଂରେ ଶ୍ରୀମତୀ ମହାପାତ୍ର--

ମାନେ ଆପଣଙ୍କ ସହଧର୍ମିଣୀଙ୍କ ସଙ୍ଗେ ଶୁଭ ସାକ୍ଷାତର ସୌଭାଗ୍ୟ ଘଟିଥିଲା । ବହୁତ ସମୟ ଧରି ନାନା ବିଷୟରେ ବେଶ୍ ଗମ୍ଭୀର ଆଲୋଚନା ହେଲା । ବଡ଼ ପ୍ରତିଭାମୟୀ—ବେଶ୍ ଚିନ୍ତାଶୀଳା—ଅତ୍ୟନ୍ତ ବିନୟୀ—ବାସ୍ତବିକ୍ ଅନେକ ଦାମୀ କଥା ସେ କହିଲେ ।

ବିନୟ—ବାସ୍, ବାସ୍ । (ଉଠି) ହୋଇଚି, ହୋଇଚି, ଠିକ୍ ଭାବିଚି ତା ହେଲେ ! ବେଶ୍ ବେଶ୍, ନମସ୍କାର । ଆଉ ଆବଶ୍ୟକ ନାହିଁ । ( ଯିବାକୁ ଉଠିଲେ )

ଗୋବିନ୍ଦ—( ଉଠି ) ଆହା ! କଅଣ ହେଲା ? ବସନ୍ତୁ, ବସନ୍ତୁ । କିଛି କଥାବାର୍ତ୍ତା ପଡ଼ି ନାହିଁ, ହଠାତ୍ ଏମିତି ଆସି, ସହସା ଏପରି ଚାଲିଯିବେ—କାରଣ କଅଣ ? ଆସିଛନ୍ତି ଯେତେବେଳେ ଅବଶ୍ୟ କିଛି···

ବିନୟ—ହଁ, ଆସିଥିଲି ତ କିଛି କାରଣ ନେଇ, କିନ୍ତୁ ଦେଖୁଛି ବିଚାର ପୂର୍ବରୁ ମହାମାନ୍ୟ ବିଚାରପତି ଆସାମୀର ଫାଶୀ ଆଦେଶ ଦେଇ ସାରିଛନ୍ତି । ଆଉ ଜବାବ ସୁଆଲର ଆବଶ୍ୟକତା ନାହିଁ ।

ଗୋବିନ୍ଦ—( ହସି ) ଦେଖନ୍ତୁ, ଆପଣ ମୋର କି ଉପକାର ବା ନ କରିଛନ୍ତି ? ଆପଣ କିଏ, ଆପଣଙ୍କ ସ୍ତ୍ରୀ ବା କିଏ ? [illegible] ପାରିଲି ନାହିଁ । ମୁଁ ତ କହିବି ଆପଣଙ୍କ ସ୍ତ୍ରୀ ଅର୍ଦ୍ଧାଙ୍ଗିନୀ ନୁହନ୍ତି, ପୂର୍ଣ୍ଣାଙ୍ଗିନୀ । ମାନେ ଠିକ୍ ଆପଣଙ୍କର ଏକ ପ୍ରତିକୃତି—ଏକ ବିଶୁଦ୍ଧ ଆକ୍ଷରିକ ଅନୁବାଦ । ଈଶ୍ୱରଙ୍କୁ ଧନ୍ୟବାଦ—ଆପଣ ଯେପରି କିବା—ସେ 'ଯୋଗ୍ୟଂ ଯୋଗ୍ୟେନ'—ଯୋଗାଇ ଦେଇଛନ୍ତି । ବଡ଼ ଭାଗ୍ୟବାନ ଆପଣ ।

ବିନୟ—ଶେଷ ହେଲା ବକ୍ତବ୍ୟ, ନା ଆଉ କିଛି ଅଛି ଆପଣ-
ଙ୍କର ? ଏକ ନିଶ୍ୱାସରେ ଚତୁର୍ବେଦ ଗାଇଦେଇ ଗଲେ ଯେ !
ଏଥର ମୁଁ ମୋର ଅନୁଯୋଗ—

ଗୋବିନ୍ଦ—ଆଜ୍ଞା, ଅନୁଯୋଗ ! ଆଦେଶ, ଆଦେଶ କହନ୍ତୁ ।

ବିନୟ—ଯଦି ତାହାହିଁ ହୁଏ, ତେବେ ଏହିଠାରୁ—ମାନେ ଆମ ସହରଠାରୁ ନିକୁଛପକ୍ଷେ ପାଞ୍ଚୋଟି ହଜାର ମାଇଲ ଦୂରରେ ମୋର ବନବାସର କିଛି ବ୍ୟବସ୍ଥା କରିଦେଇ ପାରିବ ? ଶୁଣିଲ ତ ଭାରତ ବାହାରେ ବି ତୁମର ସୁଖ୍ୟାତି ଲାଭର ପ୍ରଚେଷ୍ଟା ଚାଲିଛି । ମୁଁ ଏ ପୈତୃକ ଜୀବନଟାକୁ ଅକାଳ ମରଣ ମୁହଁକୁ ଠେଲିଦେବାକୁ କୁଣ୍ଠା ବୋଧ କରୁଛି । ତେଣୁ ଏ ଗାଁ, ଏ ଭୂଇଁ, ଏ ଦେଶରୁ ଯେତେ ଶୀଘ୍ର ପାରେଁ ବିଦାୟ ନେବାକୁ ଚାହୁଁଛି ।

ଗୋବିନ୍ଦ—ହଠାତ୍ ଏ ଇଚ୍ଛା ଆପଣଙ୍କର ?—

ବିନୟ—ହଠାତ୍ ନୁହେଁ, ଗୋବିନ୍ଦବାବୁ ! ଅନେକ ଅନୁଭବ ପରେ—ବହୁ ବର୍ଷର ପରେ—ଏ ସିଦ୍ଧାନ୍ତ ମୋର ।

ଗୋବିନ୍ଦ—କାରଣ କଅଣ ? ଆପଣ ଏ ଦେଶରୁ ଚାଲିଗଲେ···

ବିନୟ—ହିଁ, ଅନ୍ତତଃ କିଛିଦିନ ବଞ୍ଚିରହି ପାରିବ । ତୁମେ କଅଣ ମୋର ମରଣଟା ପସନ୍ଦ କର ?

ଗୋବିନ୍ଦ—ନା, ନା—ରାମ, ରାମ, ରାମ । ଆପଣଙ୍କ ଶତ୍ରୁର ମରଣ ହେଉ ।

ବିନୟ—କିନ୍ତୁ ଜାଣ ମୋ ଶତ୍ରୁ ଟି କିଏ ? ମୋ ପରମ ଶତ୍ରୁଟି ତୁମର ବହୁ ପ୍ରଶଂସିତା ସିନେମା ମହାମାୟା । ଯାହାଙ୍କର ତୁମେ ଜଣେ ଗୁଣମୁଗ୍ଧ ବା ରୂପମୁଗ୍ଧ ସ୍ତାବକ ।

ଗୋବିନ୍ଦ—କ୍ଷମା କରିବେ ସାର୍ ! ଶ୍ରୀମତୀ ମହାମାୟାଙ୍କ ସମ୍ବନ୍ଧରେ ମୋର—

ବନପ୍ସ – ହଁ ତୁମର ଧାରଣା ଖୁବ୍ ଉଚ; କାରଣ ସେ ଭଲ ଗାଇ ପାରନ୍ତି, ନାଚ ପାରନ୍ତି । ପ୍ରତି ଘଣ୍ଟାରେ ପୋଷାକ, ପରିଚ୍ଛଦ, ପ୍ରସାଧନ, – ମସ୍ତ ଗହଣା ପର୍ଯ୍ୟନ୍ତ ପରିବର୍ତ୍ତନ କରି ଦର୍ଶକର ଦୃଷ୍ଟି ଆକର୍ଷଣ କରିପାରନ୍ତି । ନମ୍ର ଭାବରେ ନମସ୍କାରଟିଏ କରିଜାଣନ୍ତି । ବେଶ୍ ହସି ହସି ନିଜର ବକ୍ତବ୍ୟ ଉପସ୍ଥାପିତ କରି ପାରନ୍ତି । ଏହିପରି ଅନେକ କିଛି, ତେଣୁ ତୁମେ ପ୍ରୀତ,— ମୁଁ ବିବ୍ରତ ।

ଗୋବିନ୍ଦ – କଅଣ ହେଲା ସାର୍ !

ବନପ୍ସ – ଏଇ ଦେଖ ! (ହଳଦୀ ହାତ ଦେଖାଇଦେଲେ) ଯା ପରେ କହିବାକୁ ହେବ ଆଉ କିଛି ?

ଗୋବିନ୍ଦ— ଏଭଳି ସେବା ଅଳ୍ପ ଲୋକଙ୍କ ଭାଗ୍ୟରେ ଜୁଟେ । କିନ୍ତୁ, କେବେ ତ ଦେଖିବା ପରି ମୋର ମନେ ହେଉନାହିଁ ସାର୍, ଯେ ଶ୍ରୀମତୀ ମହାପାତ୍ର ହଳଦୀ ଲଗାନ୍ତି । ଆଧୁନିକତାର ଚୂଡ଼ାନ୍ତ ସେ ବୋଲି ମୋର ଧାରଣା ଥିଲା—ତା ସହିତ ଯେ ରକ୍ଷଣଶୀଳତାର ସେ ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ—ଏ କଥା ତ ମୁଁ ଜାଣି ନ ଥିଲି ସାର୍ ! ଏଇ ଦୂରରୁ ମୋର ତାଙ୍କୁ ନମସ୍କାର !

ବନପ୍ସ—ସେଇଟା ତୁମେ ନିଜେ ତାଙ୍କୁ ଦେଇ ଆସିପାର । ତୁମର ଏ ସୂକ୍ଷ୍ମବୁଦ୍ଧି ଏ ଅପୂର୍ବ ଧାରଣାକୁ ଧନ୍ୟବାଦ । ହଳଦୀ ହାତ ଦେଖି ତାଙ୍କର ଅଙ୍ଗସେବା କରିବାର ଅନୁମାନ କରିପାରିଲ ତୁମେ ! ତୁମ ପରି ମେମ୍ବର ବାସ୍ତବିକ ଏ ଦେଶର ଗର୍ବ । ଅଙ୍ଗସେବା ନୁହେ ଶ୍ରୀମାନ ! ଏ ହେଲା ହଳଦୀ ବଟାର ଧାକାର ନିଦର୍ଶନ— ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାର ଅଗ୍ରଗାମୀ ସଙ୍କେତ । ମିସେସ୍ କ୍ଲବକୁ ଯିବେ, ପାର୍ଟିରେ ଯୋଗ ଦେବେ, ଘରରେ

ବନ୍ଧୁତା ଦେବେ । ବନ୍ଧୁମାନଙ୍କ ସହ ଦେଶ ପର୍ଯ୍ୟଟନରେ ଯିବେ । ଇଚ୍ଛାନୁସାରେ ଘରୁ ବାହାରିବେ ଓ ଇଚ୍ଛାନୁସାରେ ଫେରିବେ । ତାଙ୍କ ଫେରିବା ବେଳକୁ ସନ୍ଧ୍ୟୋପଯୋଗୀ ଚା, କଫି; ଜଳଖିଆ ବା ଖାନା ପ୍ରସ୍ତୁତ ଥିବ । ଗହଣା ଦୋକାନ, ଶାଢ଼ୀ ଦୋକାନ, ରେଡ଼ିମେଡ ଦୋକାନ, ଟୟଲେଟ ଦୋକାନ—ମାସ ଶେଷରେ ଯେ ପରିମାଣରେ ବିଲ୍ ଆଣନ୍ତୁ ପଛକେ, ସେଥିରେ ଆପତ୍ତି ଅଭିଯୋଗ ନ କରି ବିଲ୍ ଚୁକ୍ତି କରି ଦେବାକୁ ହେବ । ସର୍ବୋପରି ପୁଅଟି, ଝିଅଟି । ପୁଅର ବୟସ ହେଲା ପାଞ୍ଚ, ଝିଅର ବୟସ ତିନି । ସେମାନେ କୌଣସି କାରଣରୁ ମିସେସଙ୍କ ସହିତ ମାତୃତ୍ୱର ସମ୍ପର୍କ ରଖିବେ ନାହିଁ । ଦୁଧ ଖାଇବାଠାରୁ ଆରମ୍ଭ କରି ଖେଳା ବୁଲା, ଖିଆ ଶୁଆ ସବୁଥିକି ଦାୟୀ ଏଇ ହତଭାଗ୍ୟ ପିତା ! ଜନ୍ମଦେବା ପର ମୂହୂର୍ତ୍ତଠାରୁ ସେ ମାତୃତ୍ୱର ଦାୟିତ୍ୱରୁ ମୁକ୍ତ ।

ଗୋବିନ୍ଦ—ଇଏ ସବୁ କଅଣ କହୁଛନ୍ତି, ସାର୍ !

ବନସ୍ପ—ଆଲ୍‌ବିନର ଆଶ୍ଚର୍ଯ୍ୟ ପ୍ରଦୀପ କଥା । କହୁଚି—ଏଇ ଯନ୍ତ୍ର ହିଏ ଭୂମିର ଆଦର୍ଶ; ଯାଙ୍କୁ ଯନ୍ତ୍ର କୁହ ନାରୀ ସ୍ୱାଧୀନତା, ତେବେ ଦୟାକରି ମୋତେ ଟିକିଏ ସାହାଯ୍ୟ କର, ଦୟାକର ଗୋବିନ୍ଦ, ରକ୍ଷାକର ମୋତେ । ଦେଖ ଶାଣାପାଣି ଫାଶୀ ଖୁଣ୍ଟରେ ଝୁଲିଲେଣି । ଜୀବନଟା ଜୀବନ୍ତ କବର ହେଇଛି ମୋର । ଆଉ ନୁହେ—ପାରୁନାହିଁ ଗୋବିନ୍ଦ ବାବୁ—ଆଉ ମସଲା ବାଟି ପାରୁନାହିଁ, ଶାଢ଼ୀରେ ସାବୁନ ଦେଇ ପାରୁନାହିଁ, ବ୍ଲ' କେଶ—ବସାଇ ପାରୁନାହିଁ । ପିଲା ଦୁଇଟିର ଯତ୍ନ ନେଇ ପାରୁନାହିଁ । ପାରୁନାହିଁ ମାନେ—ପାରୁନାହିଁ, ପାରୁନାହିଁ, ପାରୁ-

ନାହିଁ । ଜୀବନଟାର ଘର ବନ୍ଧ ପାରୁନାହିଁ । ତେଣୁ ତମକୁ ଅନୁରୋଧ—ବମାତ ଅନୁରୋଧ—ପାର ତ ମୋତେ ସାହାଯ୍ୟ କର । ପାଞ୍ଚହଜାର ମାଇଲ ଦୂରରେ—ବୁଝିପାରୁ ନାହିଁ—ସେଠି ବ ଦୁଏତ ଝୁନା ଝୁମାର ଆତୁର ଡାକ ଏ କାନକୁ ଶୁଣାଯିବ । ତେଣୁ ଦୂର—ଆହୁର ଦୂର—ଆହୁର ଦୂର—ଏତେତ ଦୂରକୁ ଯାଇପାରେଁ । ବୁଝିଲ ଗୋବନ୍ଦ ବାବୁ ! ବୁଝିଲ ଏଥର ? ଏ ହଳଦୀ ହାତ ମୂକ ଭାଷାରେ କଅଣ କହେ ତମକୁ ? ଆଖି ଯଦ ଦେଖି ନ ପାରୁଛ, ଆଣ—କାନ ଅଣ । କଅଣ ଶୁଣୁଛ କହ । ଏଇ ତମର ନାଗ ସ୍ୱାଧୀନତା ! ସ୍ୱାଧୀନତା, ନା ଉଚ୍ଛୃଙ୍ଖଳତା ? ପ୍ରତିରୋଧ କର ପାରବ ତ ? ପାରବ, କନ୍ତୁ ପ୍ରତିକାର କର ? ମୁଁ କବ, ମୁଁ ଭାବୁକ—ମୁଁ ସ୍ରଷ୍ଟା । ମୁଁ ଚାହେଁ ପ୍ରାଣୀ ମାନେ ସ୍ୱାଧୀନ ହୁଅନ୍ତୁ—କନ୍ତୁ ଉଚ୍ଛୃଙ୍ଖଳ ! ନା, ନା ଗୋବନ୍ଦବାବୁ—ଭାବ ଦେଖିବ ଠିକଏ ତୁମେ । ମୁଁ ଆସେ । ଝଡ଼ର ସୃଷ୍ଟି ଚାହେଁ ନାହିଁ ମୁଁ । ବଛଣାଗୁଡ଼ ଖରାରେ ଦେଇଛ; ଉଠାଇବ କଏ ? ଝୁମାର ଦୁଧ ଖାଇବା ବେଳ—ନଦରୁ ଉଠିବଣି ସେ—ଯାଏଁ । ତୁମକୁ ପ୍ରତିନଧି ବାଛିଛୁ—ଶ୍ରେଷ୍ଠ ଦେଇଛୁ । ଯାହା ପାରୁଛ କର । (ଉଠି ବାହାରକୁ ଗଲେ)

ଗୋବନ୍ଦ—ସାର୍, ସାର୍ ( ଉଠିଲେ ପଛେ ପଛେ ତାଙ୍କର )

ବନସ୍ତ—ନା, ନା; କାଳବୈଶାଖୀର ପ୍ରଭଞ୍ଜନ ଚାହେଁ ନାହିଁ କେବେ କବ । ରଜନୀତ—ତୁମର କାମ ।

ଗୋବନ୍ଦ—ରାମବାବୁ ଓ ରାମବାବୁ ! ଡାକଲେ ଠିକଏ ଶୁଣ ଭଲ !

ରାମ—ମିସେସ୍ ଦାସ୍ଙ୍କ କଥାଟା ଟାଇପ୍ କରୁଛି ।

ଗୋବନ୍ଦ—ଆରେ ରଖ ତୁମ ସେ ଟାଇପ୍ । ଆଗେ ଆସ ଏଠିକି, ଗୁରୁତର କଥା ।

ରାମ—( କାଗଜ ପେନ୍‌ସିଲ ଧରି ଆସିଲେ ) ସାର୍ !

ଗୋବର୍ଦ୍ଧନ—ଲେଖ, ହଁ ଲେଖ ତ । ନାରୀମାନେ ଘରର ସବୁ କାର୍ଯ୍ୟ ଶେଷ ନ କରି, ସନ୍ତାନର ଯତ୍ନ ନ ନେଇ; ସ୍ୱାମୀର ଅନୁମତି ନ ନେଇ ଘରୁ ବାହାରକୁ ଯାଇ ପାରିବେ ନାହିଁ । ବ୍ୟତିକ୍ରମ କଲେ ପାଞ୍ଚଶହ ଟଙ୍କା ଅର୍ଥଦଣ୍ଡ କମ୍ବା ଏକବର୍ଷ ସଶ୍ରମ କାରାଦଣ୍ଡ । ଟିପିରଖ । ଆସେମ୍ବ୍ଲିରେ ଉପସ୍ଥାପିତ କରିବାକୁ ହେବ । ଆଇନ କରାଯିବ ।

( ରେଣୁଦେବୀ ଯୋଡ଼ାଯାଡ଼ ହୋଇ ଆସିଲେ )

ରେଣୁ—( ଗୋବର୍ଦ୍ଧନବାବୁଙ୍କ ପାଦଛୁଇଁ ପ୍ରଣାମ କଲେ )

ଗୋବର୍ଦ୍ଧନ—( ଚିହ୍ନି ନ ପାରି ଭୂଷି ) ହଁ, ହଁ, କଅଣ ?

ରେଣୁ—ମିନ ବୋଉଙ୍କ ପାଖକୁ, ଆସିଥିଲି, ଅଛନ୍ତି ?

ଗୋବର୍ଦ୍ଧନ—ହଁ ମିନ ବୋଉ, କୁମା ବୋଉ, ଝୁମା ବୋଉ, ଗୋ.। ବୋଉ, ରାମ ବୋଉ – ହଁ ଆଉ କ ବୋଉ ଓ—

( ରାମଙ୍କୁ ଗୃହିଁଲେ )

ରାମ – ଦାମ· · ·

ଗୋବର୍ଦ୍ଧନ—ହିଁ, ଆଉ ଦାମ ବୋଉ, ଇତ୍ୟାଦ ବୋଉ ମଧ୍ୟ ଅଛନ୍ତି । ଘରେ ଅଛନ୍ତି । ସେ କ୍ଲବକୁ ଯାଆନ୍ତି ନାହିଁ । ମାନେ ବସି ବସି ତାଳିକା କରନ୍ତି । ଯାଆନ୍ତୁ, ଦେଖନ୍ତୁ ।

( ରେଣୁ ଗୃଲି ଯାଉଥିଲେ ;

ଗୋବର୍ଦ୍ଧନ—ଅଚ୍ଛା, ହଁ ଆପଣ କିଏ କହନ୍ତୁ ତ !

ରେଣୁ—ମୁଁ ରେଣୁ ଚଇ ! ଚିହ୍ନି ପାରୁ ନାହାନ୍ତି ?

ଗୋବର୍ଦ୍ଧନ – ରେଣୁ ! ମନୁଷ୍ୟ; ନା ଏକ ମଜୀବ ମାରୁଆଡ଼ି ଦୋକାନ ? କୋଉ ରେଣୁ ? କେମିତି ଚିହ୍ନିବି ? ଦେଖୁଛି ଗୋଟିଏ ଲୁଗା ଗଦାକୁ ବନ୍ଧି ନେଉଛି ଯୋଡ଼ିଏ ପାଦ ।

ରାମ୍, ରାମ୍ ! ଟିକଏ ବାହାର ହାଓ୍ୱା ବାଜିବାର ଉପାୟ ନାହିଁ ! ହାୟରେ ହତଭାଗ୍ୟ ଦେଶ ! ଏଇ ଆମର ସ୍ୱାଧୀନତାର ନମୁନା ? ସ୍ୱାସ୍ଥ୍ୟ ରହିବ କାହିଁକି ? ଆଚ୍ଛା, ଶୁଣ ତ !

( ରେଣୁ ପାଖକୁ ଆସି ଠିଆହେଲେ )

ଗୋବିନ୍ଦ—( ରାମଙ୍କ ପ୍ରତି ) ତୁମେ ଯାଅ । ତୁମ କାମ ଦେଖ ରାମବାବୁ ! ( ରାମ ପ୍ରସ୍ଥାନ ) ହଁ, କୋଉ ରେଣୁ ତୁମେ ?

ରେଣୁ – ( ଓଢ଼ଣା କାଢ଼ି ) ମୁଁ ପରା ?

ଗୋବିନ୍ଦ—ମୁଁ ପରା ! ( ଆଶ୍ଚର୍ଯ୍ୟ ହୋଇ ଚାହିଁ ) ତା ପରେ ?—

ରେଣୁ – ଶ୍ୟାମ ବାବୁଙ୍କ ଝିଅ—

ଗୋବିନ୍ଦ—ହଁ, ହଁ ରେଣୁ, ରେଣୁ ! କଲି ସକାଳେ ବାହାଘର ହୋଇଛି ନା ତୋର ! କି ରୂପ, କି ସ୍ୱାସ୍ଥ୍ୟ ! କାହିଁ ସେ ସବୁ ? ବୟସ ମାତ୍ର ୧୭ । ୧୮ ହେବ ! ତୋର ଏ ଅବସ୍ଥା କାହିଁକି ? ଚହ୍ନିବାର ଜୁ' ନାହିଁ । କେବେ ତ ଆଉ ଦେଖା ନାହିଁ ତୋର ?

ରେଣୁ – ସବୁବେଳେ ଆସିବି ଆସିବି ହୁଏଁ, ବାପା ଘରୁ ବାହାରି ପାରିଲେ ସିନା ! ପୁଅଟିଏ, ଝିଅଟିଏ । ତାଙ୍କ ଆର୍ଦ୍ଧୋଳୀ ବୁଝିବାର ବେଳ ମିଳିଲେ ତ ଆସନ୍ତି ?

ଗୋବିନ୍ଦ—ପୁଅଟିଏ, ଝିଅଟିଏ ! ଏଁ ! କଅଣ କହୁଛୁ ! ଏ ଯେ ନବମ ଆଶ୍ଚର୍ଯ୍ୟ ! ବାହାଘର ମାତ୍ର ୩।୦ ଟା ବର୍ଷ, ସ୍ୱାସ୍ଥ୍ୟ ରହିବ କାହିଁକି ? ସ୍କୁଲର କହନ୍ତି ଆତ୍ମହତ୍ୟା ? ତା' ଛଡ଼ା ଦେହରେ ଖୋଲା ପବନ ଲାଗିବାର ସୁବିଧା ବି ନାହିଁ ! ଗୋଟେ ମସ୍ତବଡ଼ ଲୁଗାର ଦୋକାନ ! ରାମ ବାବୁ ! ରାମବାବୁ !

ରେଣୁ—( ଓଢ଼ଣା ଟାଣି ) ମୁଁ ଭିତରକୁ ଯାଉଛି ।

(ଚାଲିଗଲେ)

( ରାମ ପ୍ରବେଶ )

ଗୋବିନ୍ଦ—ଟିପି ରଖ ତ, ଜନ୍ମ—ନିରୋଧ ବିଲ୍ । ଆତ୍ମହତ୍ୟାର ପ୍ରତିରୋଧ କରିବାକୁ ହେବ । କୌଣସି ସ୍ତ୍ରୀ ଅନ୍ତତଃ ୩୦ ବର୍ଷ ବୟସ ମଧ୍ୟରେ ଦୁଇଟିରୁ ଅଧିକ ସନ୍ତାନର ମାଆ ହୋଇ ପାରିବେ ନାହିଁ । ଏହାର ଅନ୍ୟଥା ହେଲେ ତାଙ୍କୁ ୧୦ ବର୍ଷ ନିର୍ଜନ କାରାବାସ ଭୋଗିବାକୁ ହେବ । ଯାଅ, ଗୋଟେ ଆଇନ କରିବାକୁ ହେବ । ଟିପିରଖ ।

ରାମ—ଆଜ୍ଞା – (ପ୍ରସ୍ଥାନ)

(ଲୋକନାଥ ପ୍ରବେଶ)

ଲୋକନାଥ—ନମସ୍କାର, ଗୋବିନ୍ଦବାବୁ !

ଗୋବିନ୍ଦ—ଆରେ, ନମସ୍କାର, ନମସ୍କାର ଲୋକନାଥ ! ମୁଁ ତ ତମ ଘରକୁ ଯିବି ବୋଲି ନିତି ମନେ କରୁଛି । କାମର ଚାପରେ ଦୁଆରବନ୍ଧ ଡେଇଁ ପାରୁ ନାହିଁ ।

ଲୋକନାଥ—କିନ୍ତୁ ଡେଇଁବାକୁ ହେବ ବର୍ତ୍ତମାନ, ଯାହା କାମ ଥାଉ—

ଗୋବିନ୍ଦ—ହଠାତ୍ ! ଅସମୟରେ—ଏ ନିମନ୍ତ୍ରଣ ?

ଲୋକନାଥ – ଥରେ ନଜର ଦେଖିବା ଦରକାର । ମୁଁ ଦଳେ ଡାକିବ ନା ସହର ଗୁଣ୍ଡ଼ ଗୁଳିଯିବ ?

ଗୋବିନ୍ଦ—ମାନେ ?

ଲୋକନାଥ—ମାନେ ଏ। ହୁଏତ ଅନୁଭବ କରିପାରିବେ ନାହିଁ, ଏଠି ବସି ରହନ୍ତୁ ଆପଣ ! ମୁଁ ଖଣ୍ଡେ ରହସା ଡାକି ଆଣୁଛି ! ମାତ୍ର ଅଧଘଣ୍ଟାଏ ସମୟ ମୁଁ ଆପଣଙ୍କର ନେବି ।

ଗୋବିନ୍ଦ—ସିବାରେ ମୋର ଆପତ୍ତି ନାହିଁ, ତେବେ କଥାଟା ଟିକଏ ଶୁଣେ ।

ଲୋକନାଥ—କି ଅଭଦ୍ରତା ! ଆପଣ ବିଚାର କରନ୍ତୁ ଦେଖି । ଏଇଠି ଆପଣ ଆଉ ମୁଁ ବସିଛେଁ । ନ ହେଲ· ବା ମୁଁ ବିଶିଷ୍ଟ ଭଦ୍ରଲୋକ ନ ହେଲି, ଜଣେ ନାଗରିକ ତ ? ମଧ୍ୟମ ଶ୍ରେଣୀର ଜଣେ ଭଦ୍ରଲୋକ ନିଶ୍ଚୟ । ଏଇଠି ଆପଣଙ୍କ ଦ୍ୱାର ଆଗରେ ଖଣ୍ଡେ ଗାମୁଛା ପିନ୍ଧି ପାଣି ଲୋଟାଏ ଧରି ପେଟ ବାଡ଼େଇ ବାଡ଼େଇ ଜଣେ ଯଦି ଦୁଇ—ମାନେ ବହିର୍ଭୂମି ଯାଏ, ଏଇ ଆପଣଙ୍କ ଝରକା ପାଖ ପଡ଼ିଆକୁ, କଥାଟା ଟିକଏ କଳ୍ପନା କରନ୍ତୁ—ଯେ ଦୁର୍ଗନ୍ଧ ନାକରେ ବାଜିଲେ—ନାକ—

ଗୋବିନ୍ଦ—( ନାକରେ ରୁମାଲ ଦେଇ ) ଇସ୍, ରାମ୍ ରାମ୍ !

ଲୋକନାଥ—ଆହା ! ଏତେ ଦୂରରୁ ରାମ ନାମ କାହିଁକି ? ଥରେ ନିଜେ ଆସି ସ୍ୱଚକ୍ଷୁରେ ଦେଖି ଆସନ୍ତୁ—ମୋ ଝରକା ତଳ ପାକର ଅବସ୍ଥା କଅଣ ? ତା ଛଡ଼ା ସାମନାପଟ ଡ୍ରେନ୍‌ଟା ତ ସାଇ ଗୋଟାକଯାକ ପିଲାଙ୍କର ଏକ ସର୍ବସାଧାରଣ ପାଇଖାନା । ସଞ୍ଜ ସକାଳେ ଘରେ ବସି ଥାଇ ଆପଣ ପେଟ ଗୁପୁଡ଼ାରେ ଦିବ୍ୟ ଏକତାଳ ତାଳର ଶବ୍ଦ୍ୟାଜ ଶୁଣି ପାରିବେ । ଆସନ୍ତୁ, ଦୟା କରି ଥରେ ଖାଲି ।

ଗୋବିନ୍ଦ—ଏତ ତ ସ୍ୱାସ୍ଥ୍ୟ-ଭଙ୍ଗର ଯୋଗାଡ଼, ଯାହା ଦେଖୁଛି—

ଲୋକନାଥ—ଦେଖିଲେଣି ଆଉ କୋଉଠି ? ଶୁଣୁଛନ୍ତି ମାତ୍ର ! କାନଠୁଁ ଆଖି ଟିକଏ ଦୂର ଯେ, ଗୋବିନ୍ଦବାବୁ ! ମୋର ପ୍ରାର୍ଥନା ଯେ ଆପଣ ଥରେ ଆସନ୍ତୁ । ଦେଖିବେ, ସର୍କାର କି ଅବହେଳା କରୁଛି ।

ଗୋବନ୍ଦ—ଆପଣଙ୍କଠାରୁ ଲୋକନାଥ ବାବୁ, ଶୁଣିବା ମାନେ ଦେଖିବାର ବଡ଼ ବାପା ! ଏଥିପାଇଁ ଆଇନ ଦରକାର । ଆଇନ ନ କଲେ ଏ ଲୋକେ ଜବତ ହେବେ ନାହିଁ । ଆଜିକାଲି ଯୁଗରେ ସ୍ୱାସ୍ଥ୍ୟ ପାଇଁ ଲକ୍ଷ ଲକ୍ଷ ଟଙ୍କା ସର୍କାର ଖର୍ଚ୍ଚ କରୁଛନ୍ତି । ଫଳ କଅଣ ସେଥିରେ ଆଉ ?

ଲୋକନାଥ—ସେତିକି ଖାଲି ତ ନୁହେଁ । ଦୁଆର ସାମନାରେ ଘରର ପରିବା ଚୋପା, ଗୋବର, ବାସି ପେଜ,—ବାସ୍, ଗଣଗଣା ମାଛିଙ୍କ ପାଇଁ ଏକ ଅପୂର୍ବ ବାହାଘର ଭୋଜି ବାଡ଼ି ଦିଆ-ଯାଉଛି । ମନା କଲେ ଜବାବ କଅଣ, ଜାଣନ୍ତି ?

ଗୋବନ୍ଦ—ଏ ତ ଘୋର ଅନ୍ୟାୟ ! ଏ କଥାରେ ପୁଣି ଜବାବ ମିଳୁଛି ?

ଲୋକନାଥ—ଜବାବଟା ବାପର କୂଳକୁ ମନେ ପକାଇ ଦେଉଛି । କିଛି ବେଶି ହେଲେ ଆମକୁ ବରାବର ତାଙ୍କ ପିଲାଏ ମାମୁଁ ବୋଲି ମାନ୍ୟ କରୁଛନ୍ତି । ଏ ସବୁର କି ପ୍ରତିକାର ଆପଣ କରୁଛନ୍ତି ?

ଗୋବନ୍ଦ—ପ୍ରତିକାର ! ପ୍ରତିକାର ହେଲା ଆଇନ କରାଇ କଠିନ ଦଣ୍ଡର ବ୍ୟବସ୍ଥା । ଏଇଥର ପ୍ରସ୍ତାବ ଆଣୁଛି । ·ରାମ; ଟିପିରଖ ତ—ବିଷୟଟା । ମୁଁ ପରେ ଭାଷା ଠିକ୍ କରିଦେବି ।

ରାମ—( ନେପଥ୍ୟରୁ ) ଲୋକନାଥ ବାବୁ ! ଟିକିଏ ଏଣିକି ଦୟାକରି ଆସିବେ କି ? ସବୁ ନୋଟ୍ କରି ନିଅନ୍ତୁ ।

ଗୋବନ୍ଦ—ହଁ, ହଁ—ଲୋକନାଥ, ଟିକିଏ ନିକେ—

ଲୋକନାଥ—ଯାଉଛି—କିନ୍ତୁ ଟିକିଏ ଆପଣ—( ଉଠିଲେ )

[ ବାହାର ପଟକୁ ଗଲେ ]

ଏଇ ଦେଖନ୍ତୁ, ଏଇ ଦେଖନ୍ତୁ, ଏଇ ଦେଖନ୍ତୁ ଗୋବର୍ଦ୍ଧନବାବୁ ! ଖାଲି ଉଠି ଆସନ୍ତୁ ନା ଟିକିଏ ? ବ'ପାଦ୍ରଣ୍ଡ ମାନ । ମୁହଁର କଥା ମୁହଁରେ ଅଛୁ । କ ଅଭଦ୍ର ଭାବେ ଲୋକଟା—ଇସ୍; ପାଇଖାନା ଯିବାର ଯାଗା ନାହିଁ ? ଆସନ୍ତୁ ନା ଟିକିଏ ଗୋବର୍ଦ୍ଧ ବାବୁ ! ଏଇଟା ଆପଣଙ୍କର ଦର୍ଶନୀୟ ଜନିଷ—

[ ଟାଣି ଉଠାଇ ନେଇଗଲେ ]

[ ଘର ଭିତରୁ ଦୁଇଟି ପିଲା ସନ୍ତର୍ପଣରେ ଆସିଲେ । ଜଣେ ୧୦ ବର୍ଷର, ଅନ୍ୟଟି ୮ ବର୍ଷର । ଗୋବର୍ଦ୍ଧନବାବୁଙ୍କ ଟେବୁଲ ଏପାଖ ସେପାଖ ଦେଖାଦେଖି କର ବଡ଼ ପିଲାଟି ସିଗାରେଟ ଖୋଲରୁ ଦୁଇଖଣ୍ଡ ସିଗାରେଟ କାଢ଼ି ଖଣ୍ଡିଏ ଲଗାଇଲା । ଖୋଲଟି ଗୋବର୍ଦ୍ଧନବାବୁଙ୍କ ସାମନାରେ ଲେଖୁଥିବା କାଗଜ ଉପରେ ରଖିଦେଲା । ସାନଟିକୁ ଖଣ୍ଡିଏ ସିଗାରେଟ ଯାଚିଲା । ]

ବଡ଼ପିଲା—ନେ, ଲଗା—

ସାନପିଲା—ଉହୁଁ, ମୁଣ୍ଡ ବୁଲାଇବ ।

ବଡ଼—ଆରେ ଧେତ୍, ଆଜ ଟିକିଏ ବୁଲାଇବ । ଅଭ୍ୟାସ ହୋଇଗଲେ ଦେଖିବୁ କେଡ଼େ ମଜା ! ଜାଣିଛୁ, ଏ ସବୁ ଦାମୀ ଜନିଷ । ଯିଏ ଯେ ଖାଏ, ସେ ବଡ଼ଲୋକ । ସେଦିନ ଆମ ଇସ୍କୁଲ ସଭାକୁ ଅନେକ ବଡ଼ ବଡ଼ ଲୋକ ଆସିଥିଲେ । ଦେଖିନୁ ସମସ୍ତଙ୍କ ମୁହଁରେ କଅଁ ? ଯେମିତି ମାଳ ମାଳ ଚିମିନ ନଳୀ । ( ନିଜେ ଲଗାଇ ସାରି ଆଉ ସିଗାରେଟଟି ସାନପିଲାର ପାଟିରେ ଦେଇ ଦିଆସିଲି ଲଗାଇ ଦେଇ କହିଲା ) ଟାଣ ଟାଣ, ଲଭିଯିବ ।

ସାନ—( ଥରେ ଟାଣି—କାଶି ଉଠିଲା )

ବନ୍ଧୁ—( ହଠାତ୍ ହଆସିଲାଣି ଜଳୁଥିବା ଅବସ୍ଥାରେ ସିଗାରେଟର ପାଉଁଶ ଝଡ଼ାପାତ୍ରରେ ପକାଇ ଦେଇ ) ଧେତ୍, ହକମା ।
( ପିଲାର ମୁହଁ ବନ୍ଦକଲା, ଏକ ହାତରେ ଓ ଅନ୍ୟ ହାତରେ ତାକୁ ଟାଣିନେଇ ବେଗେ ବାହାରିଗଲା । ନେପଥ୍ୟରୁ କାଶ ଶୁଭୁଥାଏ )

ଗୋବିନ୍ଦ—( କାଶ କାଶ ଆସିଲେ ) ଅତି ଅନ୍ୟାୟ, ଅତି ଅନ୍ୟାୟ । ଏ ଦେଶର ଆଉ ରକ୍ଷା ନାହିଁ । ଏ ଦେଶ ପୋଡ଼ିଯିବ, ଜଳିଯିବ । (ଘରଯାକ ଶୁଙ୍ଘି ) ଏଁ ! ସିଗାରେଟ ଧୂଆଁ ଗନ୍ଧ! ରାମ, ରାମ ବାବୁ ! ଆସନ୍ତୁ ତ ବେଗେ ଏଠାକୁ ।

( ରାମ ଗୋଟାଏ ହାତରେ ପେନ୍‌ସିଲ ଓ ଅନ୍ୟ ହାତରେ ଖୋଲାଚୁରି ଧରି ସହସା ପ୍ରବେଶ କଲେ )

ରାମ—ସାର୍ !

ଗୋବିନ୍ଦ—( ବସିପଡ଼ି ) ଏ ଘରକୁ କିଏ ସେ ଆସିଥିଲା ?

ରାମ—କାହିଁ, କେହି ନାହିଁ ତ ? ଏଇ ତ ଆପଣ—

ଗୋବିନ୍ଦ—ଆଉ ( ରାମଙ୍କୁ ହାତଠାରି ) ଏଇ ତ ଆପଣ ! ତେବେ କିଏ ଆଉ ଆସିଛୁ କହ ! ( ସିଗାରେଟ ଖୋଲ ସାମନାରେ ଦେଖି ଉଠାଇ , ଏ ତେବେ କିଏ ? ( ଖୋଲ ଦେଖାଇଲେ )

ରାମ—ସିଗାରେଟ କେଶ୍ !

ଗୋବିନ୍ଦ—ଏଇନେ ଯେ କହୁଛ କେହି ଆସି ନାହିଁ ? ( ସିଗାରେଟ ପାଉଁଶ ଝଡ଼ା ପାତ୍ରରେ ଚିରା କାଗଜ ପଡ଼ିଥିଲା; ଜଳି ଉଠିଲା, ଗୋବିନ୍ଦ ସେଟା ଉଠାଇ ) ଏ କଅଣ ?

ରାମ—ସାର୍, ନିଆଁ , ଧୂଆଁ ।

ଗୋବିନ୍ଦ—ହୁଁ , ନିଆଁ ଧୂଆଁ—ଲଗାଇଲା କିଏ ? କାହାର ଏ

କାହିଁ ? ଖୋଳଟା ଏଠିକି ଆଣିଲା କିଏ ? ସତ କହୁନା, ତୁମେ ସିଗାରେଟ ଖାଅ ?

ରାମ—କେବେ ନାହିଁ, ସାର ।

ଗୋବିନ୍ଦ—ତେବେ କଅଣ ଭୂତ ଏ ଘରକୁ ଆସି ସିଗାରେଟ ଖାଇଛି ? ହୁଁ ?

( ରାମ ନୀରବ )

ଗୋବିନ୍ଦ—ଚୁପ୍ ହୋଇ ରହିଲ କାହିଁକି ? କୁହ ।

ରାମ—କହି ପାରିବି ନାହିଁ, ସାର୍ !

ଗୋବିନ୍ଦ—ଦେଖି, (ଟାଣିଆଣି) ଏଠିକି ଆସ । ହା' କର, ହା' କର ।

ରାମ—( ଆଁ କରି, ହା' କଲେ )

ଗୋବିନ୍ଦ—ଯୋର, ଯୋର, ଆହୁରି ଯୋର ।

ରାମ—ହାଃ, ହାଃ, ହାଃ

( ଗୋବିନ୍ଦଙ୍କ ଗୃହିଣୀ ଦୁଇଖଣ୍ଡି ଦରଜଳା ସିଗାରେଟ ନେଇ ଭିତରୁ ଆସିଲେ )

ଗୃହିଣୀ—ଏଇ ନିଅ କାହିଁ ତୁମର—

ଗୋବିନ୍ଦ—( ରାମଙ୍କୁ ଛାଡ଼ିଦେଇ ) ମାନେ ? ସିଗାରେଟ ! ତୁମ ହାତରେ ସିଗାରେଟ ! ପୁଣି ଦୁଇ ଦୁଇଟା ଏକ ସଙ୍ଗେ ! ବାକି ଏଇତକ ଦେଖିବାକୁ ଥିଲା ?

ଗୃହିଣୀ—ହଁ, ବାକାଟା ଦେଖି ନିଅ । ଦୁଇ ପୁଅ ତୁମର ସିଗାରେଟ ଟାଣୁଥିଲେ । ଘାନଟା କାଣି କାଣି ବେଦମ୍ । ମୁଁ ଗୋଟେ ଘଣ୍ଟକୁ ବାହାରିଛି, ଦେଖେଁତ ଘାନଟାର ଅବସ୍ଥା କାହିଲ୍ ! ପାଣି ଫାଣି ଦେଇ······

ଗୋବିନ୍ଦ—ସିଗାରେଟ ! ମାନୁ, ସାନୁ ! ଏଇ ଆଙ୍ଗୁଠି ପରି ପିଲା ! ଦେଖିଲ ଏଇ ନେହାଲ୍ ଶେଷ ଗତି ? ଆଇନ ବଳରେ ସ୍ୱାଙ୍କୁ ବନ୍ଦ କରିବାକୁ ହେବ । ନ ହେଲେ—

ଗୃହିଣୀ—ଶୁଣିଲ ତ ବନ୍ଧୁତ ! ଆଇନ ବଳରେ ନାରୀଙ୍କୁ ଘରେ ବନ୍ଦ କରିବାକୁ ହେବ । ପୁରୁଷଙ୍କୁ ନାରୀର ଗୋଲାମ କରିବାକୁ ହେବ । ପୁଣି ନାରୀଙ୍କୁ ପୁରୁଷର ଦାସୀ କରିବାକୁ ହେବ । ଜନ୍ମ ନିୟନ୍ତ୍ରଣ କରିବାକୁ ହେବ । ଆହୁରି ଢେର ଢେର କଥା ହେବ— ସବୁ ଆଇନ, ଆଇନ, ଆଇନ । ଆସେମ୍ବ୍ଲି ଏକ ଭୂତଖାନା । ସେଠି ଅଛନ୍ତି ତୁମରି ପରି ଗୁଡ଼ାଏ ଭୂତ । ଯେ ଖାଲି ସବୁ କଥାକୁ ଆଇନ କରି ବସନ୍ତି । ବେଶ୍ ତ, ଆଜି ମାନୁ ସାନୁ ଯେ ସିଗାରେଟ ଟାଣିଲେ, ସାନୁଟା ମର ମର, ଏଇଟାର ଆଇନ କିଏ କରିବ ? ତୁମେ ? ତୁମେ ଆଇନ କରିବ ? ଏ ନମୁନା ଦେଖାଇଲା ତାଙ୍କୁ କିଏ ? ସର୍କାର କିଛି କରିପାରେ ନା । କରିବ ନିଜେ ତୁମେମାନେ, କରିବ ତୁମ ସମାଜ, କରିବ ତୁମର ଚେତନା; କରିବ ତୁମର ନିଜର ବିବେକ । ସବୁଥିକି ଆଇନ, ଆଇନ, ଆଇନ ! ମୁଁ ବସି ବସି ତୁମର ସବୁ ପାହାଡ଼-ତୋଡ଼ ଆଲୋଚନା ଶୁଣୁଥିଲି । ଏପରି ହୁଏ ନାହିଁ—ଏ ଅଚଳ । ନିଜେ ନିଜେ ଲୋକେ ଯଦି ନିଜ ଘର ନ ତୋଳିବେ, ସରକାର ସ୍ୱାଙ୍କୁ ଘର ତୋଳି ଦେବ ଆସି ? କିଏ ସେ ସର୍କାର, କାହାର ସର୍କାର, କାହିଁ ସେ ସର୍କାର ? ତୁମର ସମାଜ, ତୁମର ଜାତି, ତୁମର ସଂଗଠନ ତ ସେ ? ଆଉ ଆଇନ, ଆଇନ କହ ନାହିଁ । ଢେର ଦେଖୁଛି, ଢେର ଶୁଣୁଛି, ଆଉ ନୁହେଁ !

( ନେପଥ୍ୟେ ଖୁବ୍ ଜୋର କାଶ ଶୁଭିଲା ) ଏଇ ! ସାନୁ କାଶୁଛି । ଅବସ୍ଥା ସାଂଘାତିକ ! ଡାକ୍ତର ! ଡାକ୍ତର !

( ଗୋବିନ୍ଦବାବୁଙ୍କୁ କହି ଘରଭିତରକୁ ଚାଲିଗଲେ )

ଗୋବିନ୍ଦ – ଡାକ୍ତର ! ଡାକ୍ତର !

( ରାମବାବୁଙ୍କୁ ନିର୍ଦ୍ଦେଶ କରି କହି ରାମପ୍ରିୟଙ୍କ ମନେଛ ପଛେ ଘର ଭିତରକୁ ଗଲେ । )

ରାମ – ସାର୍ ! ଡାକ୍ତର ? ( ଇତସ୍ତତଃ ହୋଇ ) ଡାକ୍ତର !

( ବାହାରକୁ ଚାଲିଗଲେ )

---

**ପଟକ୍ଷେପ**

## କୁଶୀଲବ :

କବିରାଜ—

ଲୋକନାଥ—ଜଣେ ଗ୍ରାମବାସୀ

ତପନ ଦକ୍ଷିଣରାୟ—ବୃଦ୍ଧ ପାଇକ

ଶଙ୍କର—ବୃଦ୍ଧଙ୍କ ନାତି

ଅଭି, ଅଣିକ—ଦୁଇଜଣ ରକ୍ଷୀ

କପିଳେନ୍ଦ୍ର ଦେବ—ପୁରୀର ଗଜପତି
ମହାରାଜା

ମାଙ୍ଗିଆ—ମହାଧିକାଙ୍କ ବଶିଷ୍ଠ କର୍ମଚାରୀ

ଦ୍ୱାରୀ

ପ୍ରହ୍ଲାଦ ରାଣା—

---

## ପ୍ରଥମ ଦୃଶ୍ୟ

— ପୂଜାର ଏକ ସାନ୍ଧ —

(କବିରାଜଙ୍କ ଚୌପାଢ଼ୀ । କେତେକ ଲୋକ କବିରାଜଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ଉପଦେଶ ଓ ଔଷଧ ନେଇ ଫେରୁଛନ୍ତି । ତପନ ଦକ୍ଷିଣାପୁର ନାଡ ଶଙ୍କର ମୂର୍ହ ଶୁଖାଇ ଠିଆ ହୋଇଛି ।)

କବିରାଜ—(ଅନ୍ୟ ଜଣେ ଲୋକଙ୍କୁ ଔଷଧ ଦେଉ ଦେଉ) ହଁ, ଔଷଧ ତ ଖାଇବ । ତା ସଙ୍ଗେ ପଥ୍ୟକୁ ଜଗିବ । "ଶତ ବୈଦ୍ୟ ସମଂ ପଥ୍ୟ" । ଯାହା ଯାହା କହୁଛି ସେଥିରୁ ଏ ପାଖ ସେ ପାଖ କରିବ ନାହିଁ । ଲୁଣ ଲାଲସାକୁ ଜଗି ଚଳିଲେ ଏ ଔଷଧ ଅମୃତ ପରି କାମ ଦେବ । ଆଉ ଗୋଟିଏ କଥା—ଉଷ୍ମ ଜଳରେ ଟିକିଏ ଶରୀରଟିକି ପୋଛି ଦେବ । ବୁଝିଲ !

ଲୋକ—ଆଜ୍ଞା ! ଯେମିତି କହୁଛନ୍ତି, ଠିକ୍ ସେହି ଅନୁସାରେ ଖିଆ-ପିଆ ସବୁ ତ ଚାଲୁଛି । ତାତ କିଣା ଅଛି । ଆଜ ଟିକିଏ ଉଷୁମ ପାଣିରେ ପୋଛିପୋଛି କରିଦେବ । ହେଇଟି, ଆପଣଙ୍କୁ ଆମେ କଅଣ ଦେଇ ପାରିବୁ ? ଫଳେ ପୁଷ୍ପେ ଯାହା ହେଲା । (ଟଙ୍କା ବଢ଼ାଇ) ଏ କେବଳ ଔଷଧ ଖର୍ଚ୍ଚ ।

କବିରାଜ—(ତା ହାତରୁ ଟଙ୍କା ନେଇ) ହଉ, କାଲି ଆସିବ । ଠିକ୍ ଏମିତି ବେଳରେ ।

ଲୋକ—ଦଣ୍ଡ (ପ୍ରଣାମ କରି) ପ୍ରଣାମ ଆଜ୍ଞା !

କବିରାଜ— ହଁ ହଁ; ମଙ୍ଗଳ ହେଉ । ଆସ । (ଲୋକଟି ଚାଲିଗଲା)

ଦ୍ୱିଜଶମ୍ଭୁ—ମୋ କଥା ଟିକଏ ବିଚାର କଲେ ନାହିଁ ? ବହୁତ ବେଳୁ ଅନୁଯରଣରେ ବସି ରହିଛୁ । ଘରେ ବାଧକା ମଲୁ !

କବିରାଜ—ମୁଁ ଆଉ କଅଣ କରି ପାରିବ ? କହିଲ ଫର ! ତିଆରି ଔଷଧ ତ ମୋ ହାତରେ ନାହିଁ । ତବା ତ ଦେଇଛି । ମସଲ ସବୁ ସେଇ ଅନୁସାରେ ଆଣ । ମୁଁ ବାଙ୍କି ଯାହା ହବ ମିଶାଇ ଔଷଧ ଭାଗଟା ତିଆରି କରିଦେବ । ବଇଦ ଗୃଉଳ ପଥି କରିବାକୁ ବସିଲେ ମୋ ବସା ବାପ୍ପା ଠୁକିଯିବେ ସିନା !

ଦ୍ୱିଜଶମ୍ଭୁ—ଆଜ୍ଞା ! ମୁଁ କଅଣ ସେ କଥା କହୁଛି ? ଭାବ ମୁତାବକ ରକମ ଜାଣିବାକୁ କହି ଆସିଛି । ପୁଅ ଯାଇଛି କିଆଖା ଉପରକୁ । ମେଡ଼ି ମୂଳେ କଲେଇ ଗଣ୍ଡାକ ମୁକୁଳା ହୋଇ ପଡ଼ିଥିଲ । ଗୋରୁଗାଈଙ୍କ ଗଲ ଆସିଲ ମୁଁ ହଁ ସେଇଟା ! ସେ ଫେରିଆସିଲେ ଦୋକାନକୁ ଯିବ । ପ୍ରାଣୀଟା କଷ୍ଟ ପାଉଛି । ଥିଲେ ପାନେ ଦ'ପାନେ ଦେଇଥାନ୍ତୁ । ଉପର ଓଳିକୁ ମସଲସବୁ ଆଣିକରି ଆସିବ ।

କବିରାଜ—ପାନେ ଦ'ପାନ କେଜାଣି ଅବା ଥିବ । କଉଡ଼ିଆ ରକମ ନା, ଏଥିରେ କସ୍ତୁରି ଭାଗ ଅଛି ।

ଦ୍ୱିଜଶମ୍ଭୁ—ଯାହା ହେଲ କଉଡ଼ି ଦେବ । ହେଲେ, ଏ ଓଳି କଥାକୁ ପାଇବ ନାହିଁ । ଉପରଓଳି, ନୋହିଲେ ବେଳବୁଡ଼ିକୁ ସବୁ ନେଇକରି ଆସିବ ।

କବିରାଜ—(ପୁଡ଼ିଆକୁ ଔଷଧ କୁମ୍ପା କାଢ଼ି) ହେଇଟି ନିଅ, ଦ'ପାନ ଅଛି । ଆଜିକ ହୋଇଯିବ ।

ଦ୍ୱିଜଶମ୍ଭୁ—ଅନୁପାନ ?

କବିରାଜ—ସେଇ ଅଦା ରସ; ମହୁ । (ଔଷଧ ଦେଲେ) ଯେମିତି ଖୁଆଉଥିଲେ ସେଇମିତି ଚାଲିବ ।

ଦକ୍ଷିଣରାୟ—(ଔଷଧ ନେଇ) ହଉ ଆଜ୍ଞା ! (ପ୍ରଣାମ କରି ଚାଲିଗଲା) ।

କବିରାଜ—(ଦକ୍ଷିଣରାୟଙ୍କ ନାତି ଶଙ୍କରକୁ) ତୁ କଅଣ କହୁଚୁ ରେ ପିଲା ? ଅଜା ଦେହ କେମିତି ଅଛି ?

ଶଙ୍କର – ଆଗ ବେଳଠୁ ଟିକିଏ ଭଲ ଅଛି ଯେ, ଆଉ ଔଷଧ ନାହିଁ ।

କବିରାଜ—ପନ୍ଦର ଦିନ ହେବ ତ ଔଷଧ ଦେଲି । ଖାଲି ଏତିକି ଭଲ ହୋଇ ଆସିଲା । ଆଉ କେତେଦିନ ଦେଇ ପାରିବି, କହ ? କଉଡ଼ି ଆଣିଛୁ ?

ଶଙ୍କର—(ଚୁପ୍ ହୋଇ ରହିଲା)

କବିରାଜ—ଯା କଉଡ଼ି ନେଇ ଆସିବୁ । ମୁଁ ଟିକିଏ ଯାଆନ୍ତି ଯାଇକୁ ଆସେ, ଔଷଧ ନେଇ ଯିବୁ ।

ଶଙ୍କର – ଆଜି ଦିନଟା ଯାଇ ହେଲେ· · ·

କବିରାଜ—(ଉଠି) ହଉ, ତୁ ଆସିବୁ ତ । ଏକା ଥରେ ନୂଆ ଔଷଧ ପାଇଁ କଉଡ଼ି ଆଣିବୁ, ଔଷଧ ନେଇଯିବୁ । ତପନ ଦକ୍ଷିଣରାୟ ପାଇଁ ମୁଁ ପନ୍ଦରଦିନର ଔଷଧ ସକାଶେ କଉଡ଼ି ମାଗି ନାହିଁ । ଏଣିକ ଯାହା ହବ ସେତିକି । ଦିଅ ବୋଇଲେ, କେତେ ଆଉ ଦେଇ ପାରିବ ? ଯା, ଅଜାଙ୍କୁ କହିକରି କଉଡ଼ି ନେଇ ଆସିବୁ, ଯା ।

ଶଙ୍କର—( ନୀରବରେ ପ୍ରଣାମ କରି ଚାଲିଗଲା । କବିରାଜ ଘରକୁ ଉଠିଗଲେ )

---

ପଟପରିବର୍ତ୍ତନ

## ଦ୍ୱିତୀୟ ଦୃଶ୍ୟ

(ରାତି ଶେଷ ହୋଇ ଆସିଛି । ଦୂରରୁ ଅତି ଧୀରେ କୀର୍ତ୍ତନ ଶବ୍ଦ ଶୁଭୁଛି । ଖଣ୍ଡିଏ ଦଉଡ଼ିଆ ଖଟ ଉପରେ ଶୋଇଛନ୍ତି ବୁଢ଼ା ତପନ । ସେ ଜୋରରେ କାଶୁଛନ୍ତି । ଅଳ୍ପ ଦୂରରେ ଗୁଦର ଘୋଡ଼ହୋଇ ଶୋଇଛି ତପନର ନାତି ଶଙ୍କର । ସେ ବୁଢ଼ାଙ୍କର କାଶ ଶୁଣି ଧଡ଼ପଡ଼ ହୋଇ ଉଠି ପଡ଼ିଲା ଓ ଗୋଟିଏ ପଲମ ନେଇ ବୁଢ଼ାଙ୍କ ମୁହଁ ପାଖରେ ଦେଲା । ତପନ କଫ ପକାଇଲେ । ଶଙ୍କର ବୁଢ଼ାଙ୍କର ଗୁଡ଼ି ଆଉଁସିବାରେ ଲାଗିଲା ।)

ବୁଢ଼ା ତପନ—ଶଙ୍କର ! ପାହାନ୍ତିଆ ହେଲାଣି ନା କଅଣ ?

ଶଙ୍କର—ହଁ ଅଜା—ଢଅଙ୍କ ମଙ୍ଗଳ ଆଳତି ବାଜା ଶୁଭୁଛି । ସୁଲୁସୁଲିଆ ପବନ ପରା ବହିଲାଣି !

ତପନ—ବଡ଼ କଷ୍ଟ ଶଙ୍କର ବଡ଼ କଷ୍ଟ । ଔଷଧଟା କବିରାଜଙ୍କ ପାଖରୁ ଆଣିଲୁ ?

(ନୀରବରେ ଶଙ୍କର ବୁଢ଼ାର ପିଠି ଆଉଁସିଲା । ବୁଢ଼ା କିଛିକାଳ ତାକୁ ଚାହିଁଲେ )

ତପନ—ଆଣିନାହୁଁ ? ମନେ ନାହିଁ । ହଉ ଆଜି ଯିବୁ । କହିବୁ ଜାଣଟା ପାହାନ୍ତାକୁ ଟିକିଏ ବଢ଼ୁଛି, ବୁଝିଲୁ ?

( ଶଙ୍କର କିଛି ନକହି ଜାଢ ପକାଇଲା )

ତପନ—ଖରା ପଡ଼ୁ, ଯିବୁ ବାହାରି ଟିକିଏ ବାପା !

( ଶଙ୍କର ନୀରବରେ ଲୁହ ପୋଛୁଛି । ତପନ ନିଜ ପଛ ପଟକୁ ମୁହଁ ବୁଲାଇ ଦେଖିଲେ, ଶଙ୍କର ଚରଚର ହୋଇ ଲୁହ ପୋଛୁ ପକାଉଛି । )

ତପନ—କରେ ! କାନ୍ଦୁଛୁ କାହିଁକି ବାପା ? କଅଣ ହେଲା କି ? ପିଲା ଲୋକ, କେତେ ଖଟିବୁ ? ହେଲା, ମନେ ନାହିଁ, କାଲି ଯାଇ ଆଣିବୁ ! ସେଇଥିରେ ମୋର ଉପକାର ହୋଇ-ଥିଲା ।

ଶଙ୍କର—( କାନ୍ଦ କାନ୍ଦ ହୋଇ ) ଯାଇଥିଲି ସେ ଆଜ, କବିରାଜେ ଔଷଧ କଉଡ଼ି ମାଗିଲେ । ମୁଁ ଭୁନ ହୋଇ ବାହୁଡ଼ି ଆସିଲି ।

ତପନ—(ମୁହଁ ଫେରାଇ ଆଣି ଦୀର୍ଘ ନିଶ୍ୱାସ ମାରି ) ହଁ, ହଁ – ସତ କଥା, ହାତରେ ତ କାଣି କଉଡ଼ିଟିଏ ନାହିଁ । ଔଷଧ କଣ ହେବ କୋଉଠୁ ? ଠିକ୍ କହୁଛୁ ରେ ବାପା, ଠିକ୍ କହୁଛୁ । ଦିନେ ତ ତପନ ଦକ୍ଷିଣରାୟର ଏଇ ହାତ ସୁନା, ରୁପା, ମୋତି; ମାଣିକ୍ୟ ଗୋଡ଼ ମାଟି ପରି ଫୋପାଡ଼ି ଦେଇଛି । ସେ ଦକ୍ଷିଣରାୟ ଆଜ ବୁଢ଼ା ହେଲା । ଦି ଓଳି ଦିଇ ମୁଠା ଦାନା ତା ମୁହରେ ଦବାକୁ ମିଳୁ ନାହିଁ । ହିଁ ରେ ବାପ, କବିରାଜଙ୍କୁ ତ ମୁଁ ବଡ଼ଲୋକ କରି ନାହିଁ, କି କିଛି ଦେବେ ଦେଇ ନାହିଁ । ଯାହା ପାଇଁ ମୁଣ୍ଡକୁ ପାଣି ଛଡ଼ାଇ ଦେଇଥିଲି, ସେ ତ ଏକଥା ବୁଝିଲେ ନାହିଁ । ଆଚ୍ଛା, ଶଙ୍କର ! ଚାଲ ବାହାରକୁ ଚାଲ, ମୁଁ ଦେଖେଁ ମାହାପୁରୁ ଉଇଁ ଆସିଲେଣି କି ନାଇଁ ! ବାହାର ଅନ୍ଧାର କଟିଗଲାଣି କି ନାଇଁ ! ଚାଲ, ଦେଖ ଶଙ୍କର, ମୋର ସେ ପୁରୁଣା ମିରଜାଇ, ମୋର ସେ ଶାଢ଼ୀ ଶିରପା ପେଡ଼ିରେ ଥିବ—ଦେଖ । ମୁଁ ଆଜି ପୁଣି ଥରେ ଯୁଆନ ହେବି । ଚାଲ ଶଙ୍କର, ଚାଲ । ( ବୁଢ଼ା ବିଛଣାରୁ ଉଠିଲେ )

———

## ତୃତୀୟ ଦୃଶ୍ୟ

( ପଥ—ଗୋଟିଏ ସ୍ତ୍ରୀ ଲୋକ ଆଗେ ଆଗେ ଗ୍ଲଲିଛି । )

ମାଣିକ—( ନେପଥ୍ୟରୁ ) ଆଲୋ, ଏ ମୋତି ! ଆଇଲା ବେଳକୁ ଡାକ ଡୂକ ସାଙ୍ଗରେ ଆଣିଲୁ, ଗାଧୁଆ ତୁଠରୁ ଗ୍ଲଡ଼ି ପଳାଉଛୁ ? (ପ୍ରବେଶ କଲା )

ମୋତି—ଆ, ଆ—ତୁ ଏବେ ଏତେ ପଛରେ ଅଛୁ ବୋଲି ମୁ ଜାଣିଚି ? (ଦୁହେଁ ପାଖ ପାଖ ହୋଇ ଆସିଲେ )

ମାଣିକ—( ଆସି ) ଆଲୋ ଓଦା ଲୁଗାରେ ପରା ଉତମ ମୋତେ ତାଙ୍କ ଘରକୁ ଭିଡ଼ ନେଲା ଲୋ ! କଥା କହୁ କହୁ ଘଡ଼ିଏ ମଠ ହେଲା । ତୁ ଏବେ ଏତେବେଳଯାଏ ଗାଧୁଆ ତୁଠରେ ଥିବୁ ବୋଲି ମୁଁ କେମିତି ଜାଣିଲି ? ତୋର ତ ବେଗେ ବାହୁଡ଼ ଯିବାର କଥା !

ମୋତି—ଆଲୋ ହଁ ଲୋ ! ବଉଁଙ୍କ ମଙ୍ଗଳ ଆଳତି ବେଳ ବିତି ଗଲାଣି କି କଅଣ ? ମୋ ଶାଶୁଙ୍କୁ ତ ତୁ ଜାଣିଚୁ । ମୁଁ ଘରେ ରହିଲେ, ସେ ଦେଉଳକୁ ଯିବେ । ଆଜି ମୋ କରମରେ କଅଣ ଅଛି କେଜାଣି ?

ମାଣିକ—କୋଉଠି ଏତେ ଉଛୁର କଲୁ ଯେ ?

ମୋତି—ଆଲୋ ! ବୁଢ଼ା ଦକ୍ଷିଣିଆଙ୍କୁ ତ ଜାଣିଚୁ··· ?

ମାଣିକ—( ଚମକି ) କଅଣ ହେଲା ! ବୁଢ଼ା କଅଣ ଗ୍ଲଲିଗଲେ କିଲୋ ? ହିଁ ବାଧକାରେ ତ ପଡ଼ିଥିଲେ କୋଉକାଳୁ । ଆହା, ଏଣିକ ପଡ଼ନ୍ତ କାଳକୁ ବହୁତ ଦୁଃଖ ତାଙ୍କ କରମରେ

ଥିଲି ନା ! ପୂଅ ଗଲ, ବୋହୂ ଗଲା, ଝିଅପୂଅ ଗଲେ । ଶେଷରେ ଏ ନାତିଟିକୁ ଅନାଇ ବଞ୍ଚିଥିଲି ବୁଢ଼ୀ କଅଣ······

ମୋତି—ଆଲୋ, ନାଇଁମ ! ବୁଢ଼ାର ହାଡ଼ କଡ଼ମଡ଼ୁଛି ! ଏତକ ମଣାକୁ ଗଲା ଯୋଡ଼ ପିନ୍ଧି, ବେଶପାଟକା ବାନ୍ଧି ଠୁକୁରୁ ଠୁକୁରୁ କୁଆଡ଼େ ପଳାଇଥିଲା ପରା ବୁଢ଼ା ?

ମାଣିକ—ସତେ ଏବେ, ରାମ ରାମ ! କେତେ କଥା ଏ ନ କହିଲି ଆଲୋ, ଶୁଆମନରେ ପରା ଧରି ପେଲୁଥିଲା ବୋଲି କହୁଥିଲେ ?

ମୋତି—ମଲୋ, ହଁ, ହଁ-ହଉ ନାହାନ୍ତି କି ? ପୋଷାକ କରିଲେ ତାଙ୍କୁ ଦେଖିବାକୁ ଯାତରା ଗୋଟାକର ଲୋକ ଭିଡ଼ ହୋଇଗଲେ ପରା ! ତହିଁକି ମୋ ଦେଢ଼ଶୁର ଆସି ମଝିବାଟରେ ବୁଢ଼ାଙ୍କ ସଙ୍ଗେ ପହଡ଼େ ଠିଆହୋଇ କଥା ହେଲେ । ମୁଁ ତ ପାଣିମାଠିଆ ଧରି ଅଟକିଲି । ସେ ବାଟରୁ ଘୁଞ୍ଚିଲେ ସିନା, ମୁଁ ଘାଟରୁ ଗୋଡ଼ କାଢ଼ିବି ?

ମାଣିକ—ଚାଲ, ଚାଲ ବେଗେ । ତୋ ଶାଶୁ ବୁଢ଼ୀ ଯୋଉଁ ଖଣ୍ଡାଖାଣ୍ଡି—କରମରେ ତୋର ଆଜି କେତେ ଗାଳିମନ୍ଦ ଅଛି କେଜାଣି ?

ମୋତି—ଆଲୋ—ସେଇଆ ମନେ ମନେ ହୋଇ ଆସୁଥିଲି ପରା ! ତୋତେ ଦେଖିଲାରୁ ବହପ ପାଇଲି । ତୁ ଟିକିଏ ଆମ ଘରବାଟ ହୋଇ ଚାଲ । ଶାଶୁ ତ ମୁଁ କହିଲେ ପରତେ ଯିବେ ନାହିଁ ! ତୁ ହେଲେ ଟିକିଏ ସମୁଜାଇ ଦବୁ ।

ମାଣିକ—ହଉ, କହୁଛୁ-ଚାଲ ଯିବି ଯେ, ବାକି ମୋ କଥାକୁ କଅଣ ତୋ ଶାଶୁ ସତ ଯିବ ? ବୁଢ଼ୀର ତ ସବୁଥିକି ଅଣବିଶ୍ୱାସ । କହୁଚୁ, ହଉ ଚାଲ । [ ଉଭୟେ ପ୍ରସ୍ଥାନ ]

## ଚତୁର୍ଥ ଦୃଶ୍ୟ

( କପିଳେନ୍ଦ୍ର ଦେବ ମହାରାଜାଙ୍କର ରାଜସଭା । ରାଜଗୁରୁ, ବକସି, ପାଞ୍ଜିଆ ପ୍ରଭୃତି ବସିଛନ୍ତି । ଦ୍ୱାରୀର ପ୍ରବେଶ ଓ ପ୍ରଣାମ )

ଦ୍ୱାରୀ—ମଣିମା ! ଜଣେ ବୁଢ଼ା ଆସି କହୁଛି "ଦକ୍ଷିଣିରା ଆସିଛି, ତୁମୁରେ କଅଣ ଦୁଃଖ ଜଣାଇବ ବୋଲି ?"

ମହାରାଜ—ହଉ, ଆସୁ । ( ଦ୍ୱାରୀର ପ୍ରସ୍ଥାନ ଓ ବୁଢ଼ାର ପ୍ରବେଶ )

ମହାରାଜା—କଅଣ ବୁଢ଼ା ? ତୁମର କିଛି କହିବାର ଅଛି ?

ତପନ—ମଣିମା, ବୁଢ଼ା ହେଲି, ବଳ ହଟିଲା । ଏ ଶୁଆଁସ ରୋଗଟା ମୋତେ ଅଣାୟତ୍ତ କରି ପକାଇଲାଣି । ସେଥିରେ ପେଟକର ଦି ଓଳି ଦି ମୁଠା ଦାନା ପଡ଼ିଲା ନାହିଁ । ଆଉ ପଥି ପାଚନ ଓଷଦ ମଉଷଦ କଥା ପଚ୍ଚରେ ଅବା କିଏ ? ତୁମୁ ଓଡ଼ଶା ଖଣ୍ଡମଣ୍ଡଳର ଅନ୍ନଦାତା । ଚଡ଼େଇ ଚିରଗୁଣୀଙ୍କର ପେଟ କଥା ଜାଣନ୍ତି । ତୁମୁଙ୍କ ରାଇଜରେ ଏ ତପନ ଦକ୍ଷିଣିରା କଅଣ ନା ଖାଇ, ନ ପିଇ ମରିବ ?

ପାଞ୍ଜିଆ—ଓଃ, ତୁମେ ! ( ଆଶ୍ଚର୍ଯ୍ୟ ହୋଇ ) ତୁମେ ତପନ ଦକ୍ଷିଣରାୟ ! ଜମା ଚିହ୍ନି ହେଉ ନାହିଁ ତୁମକୁ ? ତୁମକୁ ତ ମଣିମା ଅନେକ ଖୋଜୁଛନ୍ତି ?

ମହାରାଜା—ତେବେ ଅ.କଯାଏ କୋଉଠି ଥିଲ ଦକ୍ଷିଣରାୟ ? ମୁଁ ତୁମକୁ କେତେ ଖୋଜନ୍ତୁ । କେଡ଼େ ଉପକାରୀ ଲୋକ ତେବେ ଆମର । ଦକ୍ଷିଣ ଲଢ଼େଇରେ ଶତ୍ରୁ ପାଇକେ ଚଢ଼ି ଆସିଲାବେଳେ ତେବେ ଏକୁଟିଆ ଅଣ୍ଟାଭିଡ଼ି ଠିଆ ହୋଇ ନ ଥିଲେ ଆମ ଜଣିବା ନିଶ୍ଚୟ ହୋଇପଡ଼ିଥାନ୍ତା । ହଉ, ହଉ, ଭଲ ହେଲା—ତେବେ ଆସିଗଲ । ମୁଁ ବକ୍‌ସିଙ୍କୁ କହି ଦଉଛି, ସେ ତୁମର ସବୁ ସୁବିଧା କରିଦେବେ । ତୁମ କାମର ପୁରସ୍କାର ତୁମକୁ ମିଳ ନାହିଁ ।

ତପନ—ବକସି ! ବକସି ମୋତେ କ ପୁରସ୍କାର ଦେବେ ମଣିମା ! ଦକ୍ଷିଣ ଲଢ଼େଇରେ ଦକ୍ଷିଣିବ ପଦ ଦେଇ ଏ ବୁଢ଼ା ମୁଣ୍ଡରେ ଉପାଧି ଶିରପା ଭିଡ଼ି ଦେଇ ଆଜ୍ଞା କରିଥିଲେ । ବକସିଙ୍କି ସେ କଥା କ ଜଣା ମଣିମା !

ପାଞ୍ଜିଆ—ବକ୍‌ସି ପରା ସ୍ଵମୁଙ୍କ ପ୍ରତିନିଧି । ଏ କଥା କଅଣ ତୁମକୁ ଜଣା ନାହିଁ ?

ତପନ—ଜାଣେ, ଜାଣେ ସବୁ ହେ, ପାଞ୍ଜିଆ ସାଆନ୍ତ ! ବାକ ଏ ମୁଣ୍ଡ ରହିଲେ ଯାହା ମନକୁ ଆସୁଛି, ସ୍ଵମୁରେ ହପଦ ଜଣା କରିବ ।

ରାଜା—ହିଁ, କଅଣ କହିବ, କୁହ ଦକ୍ଷିଣରାୟ । କଛି ଭୟ ନାହିଁ ।

ତପନ—ମଣିମା ! ଗୋଟିଏ କଥା ସ୍ଵରଣକୁ ଆସୁ । ଦକ୍ଷିଣ ଲଢ଼େଇ ଲଢ଼ିଥିଲ ଏଇ ହାତ, ଏଇ ଗୋଡ଼ । ମୁଣ୍ଡକୁ ପାଣି ଛଡ଼େଇ ଲଢ଼ିଥିଲ ଏଇ ଓଡ଼ିଆ ପାଇକ ପିଲା—ତପନ ଦକ୍ଷିଣରାୟ ନିଜେ । ଆଉ ଆଜ ଦକ୍ଷିଣିବ କାହିଁକ ପୁରସ୍କାର ନବ ସ୍ଵମୁଙ୍କ ପ୍ରତିନିଧିଙ୍କ ଠଉଁ ?

ରଜା—ମତ କହିଲ ଦକ୍ଷିଣ ରାୟ ! ( ହସି ) ମୋ ପାଇଁ ତ ତମର ପ୍ରତିବନ୍ଧୀ ଲଢ଼େଇ କରିନାହିଁ ? ଆଉ ଆଜ ତୁମେ କାହିଁକି ପୁରସ୍କାର ନେବ ମୋ ପ୍ରତିବନ୍ଧୀ ଠାରୁ ? ମୁଁ ନିଜେ ଖୋରଧାର ଦୁଇଖଣ୍ଡି ଗାଁ ତୁମକୁ ପୁରସ୍କାର ଦେଉଛି, ଏଥର ଖୁସି ହେଲ ତ ?

ତପନ—ମଣିମା ! ( ଆନନ୍ଦରେ ) ମୋର ଆଉ କିଛି କହିବାର ନାହିଁ ମଣିମା, ମୋର ଆଉ କିଛି କହିବାର ନାହିଁ । ମହାରାଜାଙ୍କର ଜୟ ହେଉ । ଜୟ ମହାରାଜା କପିଳେନ୍ଦ୍ର ଦେବଙ୍କର ଜୟ । ( ଆନନ୍ଦରେ ଚଳି ଯାଉଥିବା ବେଳେ )

ସମସ୍ତେ—( କରତାଳି ଦେଲେ )

( ପଟପତନ )

---

## କୁଶୀଲବ :—

ରସାନନ୍ଦ – ଜଣେ ଧନୀ ବ୍ୟକ୍ତି

ରମେଶ—ପୋଷ୍ୟପୁତ୍ର

ଉମେଶ | —ରମେଶଙ୍କ ସହପାଠୀ
ରବି | କଲେଜ ଫେରନ୍ତା
ଶଶୀ | ଯୁବକ

ମିଶ୍ରେ – ଘଟକ

ନଟା—ରସାନନ୍ଦଙ୍କ ଭୃକର ଇତ୍ୟାଦି

---

## ପ୍ରଥମ ଦୃଶ୍ୟ

( ପଲ୍ଲୀଗ୍ରାମ । ଶଶୀର ଘର—ବାହାର ମେଲା । ବସିଥିଲେ ଶଶି, ରବି, ଉମେଶ ଓ ରଘୁ )

ଶଶୀ—ପାଠ ଶାଠ ପଢ଼ି ସମସ୍ତେ ତ ବସିଲ ଗାଁ ଛାଡ଼ି ଯିବାକୁ ଗାଁରେ ତେବେ ରହିବ କିଏ ?

ରବି—ଗାଁରେ ରହିବେ ପଞ୍ଚାଏ ଗଜମୂର୍ଖ, ଗୁଡ଼ାଏ ବଣ ଜଙ୍ଗଲ, ଆବର୍ଜନା, ଆଉ ନଙ୍କ ବଲ ଟୋଠା·····ଇତ୍ୟାଦି ଇତ୍ୟାଦି ।

ଉମେଶ—ଆଉ ତୁମେ ରହିବ କେଉଁଠି ?

ଶଶୀ—ଆମେ ? ଆଶ୍ରମରେ, ସହରରେ । ଯୋଉଠି ଅଛି ବିଜୁଳି ବତି, ଗାଡ଼ି ମୋଟର, ସିନେମା ଥିଏଟର—ମଜା ମଜଲିସ୍ । ଜୀବନଟାକୁ ଯୋଉଠି ପୂର୍ଣ୍ଣ ରୂପେ ଉପଭୋଗ କରିହେବ ।

ଉମେଶ—ହଉ, ଖାଇବ କଅଣ ?

ରବି—ଖାଇବା ? ପଲାଉ ମାଂସ, ଚପ୍ କଟଲେଟ୍—ରସଗୋଲ୍ଲା, ରାଜଭୋଗ, ଦିବ୍ୟ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ।

ଉମେଶ—ପାଇବ କେଉଁଠୁ ?

ରଘୁ—ଯା ବି ବତାଇବାକୁ ହେବ ତୋତେ ? ହାୟରେ ଅଷ୍ଟାଦଶ ଶତାବ୍ଦୀର ନାବାଳକ ! ଆରେ, ବଜାର ପଡ଼ିଛି । ଅବଶ୍ୟ ଟିକିଏ ମାଲ ବାନ୍ଧି ନେବା ଦର୍କାର । ତାହାରି ଗ୍ରାହକ ବହୁ ।

ବାସୀ—ସଢ଼ା—ପଚ୍ଚ ଦେଖିବାକୁ । ତା ପାଇଁ ବ ବଜୁଳବଣି ଅଛୁ—ଭୂଜଡ଼ା ଦନ । ଖାଲି ଅନ୍ଧ ନ ହୋଇଥିଲେ ହେଲା ।

ଶଶୀ—ଅନ୍ଧ ତ ମାଲ୍—ଢେର ଅଛୁ । ଆଖି ବ ଅଛୁ, କନ୍ତୁ ମାଲ୍ ତ ବଜାରରେ ଫୋପଡ଼ା ହେଉ ନାହିଁ । ଅଣ୍ଟାରେ ଧନ ଥିଲେ ତ; ପୁଅ ବାହା କର ମନ । ଧନର ବ୍ୟବସ୍ଥା ?

ରବ—(ଭବଲ ପର) ଉଁ·········

ଉମେଶ—ସେଇଟି ତ ଗାଢ଼ ଅଟକ ଗଲା । ଆଖିରେ ଦେଖିବା ସୁବଧା ତ ଢେର୍ । ପାଟିରେ ଚାଖିବା ସୁଯୋଗ କାହିଁ ?

ଶଶୀ—ହଁ ଟଙ୍କା ଖର୍ଚ୍ଚ କର ଖାଅ ।

ଉମେଶ—କନ୍ତୁ ଟଙ୍କାଟାର ଆସିବା ବାଟ ?

ରବ—ଚୁକର ।

ଶଶୀ—ହଁ, ଅଧମ ଉଦ୍ଧାରଣ ପନ୍ଥା । ଏଣେ ଘର ଉଜାଡ଼ବସ୍ତ । ଜମି-ବାଡ଼ ପଡ଼ଆ । ଚୂଉଲ କୁଲକ କୁଆଁକୁ ଦେଇ, ଧାନ ମାଣେ ଚୂହିଁବା କଥା । ଆଉ ଚୂକର ବା ସବୁ ପାଠୁଆଙ୍କ ପାଇଁ ଆସିବ କେଉଁଠୁ ଏତେ ? ଏ ସଂଖ୍ୟା ତ ଦନକୁ ଦନ ବଢ଼ି ଚୂଲଛୁ । ଚୂକର ସୃଷ୍ଟି କରବ କଏ ? ପୁଣି ଖାଇବ କଅଣ ? କେଉଁଠୁ ଆସିବ ଡମର ଖାଦ୍ୟ ?

ଉମେଶ—ଏ ପୈତୃକ ଜୀବନଟା ଯେ ଭୋଜନ ବନା ଆତ୍ମହତ୍ୟା କରବ ରେ ରବ ! ଠିକଏ ସେ କଥା ଭବଲୁ !

ରମେଶ—ଯାହାଙ୍କୁ ତୁମେ କହୁବ ଗଜମୂର୍ଖ, ସେଇମାନେ,—ସେଇମାନେ ରଖନ୍ତ ତୁମ ଜୀବନ । ସେଇ ଯୋଗାନ୍ତ ଦାନା କନା । ଟଙ୍କା କଉଡ଼ ଖାଇ କେହୁ ବଞ୍ଚେ ନାହିଁ । ବସିବାର ଭରସା ବ ନାହିଁ କାହାର, ଚୂଉଲ ମୁଠିକ, ପନ ପଶବାଟାଏ—

ସବୁର ମାଲିକ ସେଇ,—ଯାହାଙ୍କୁ ତୁମେ ଦୂର୍ ଦୂର୍ ମାର ମାର କରି ଗାଁରେ ଫିଙ୍ଗି ଫୋପାଡ଼ ଦେଉଚ ।

ଶଶୀ—ସେ ସବୁ ବାଜେ କଥା ଛାଡ଼ । ଆପେ ଖାଇ, ଜାତି ଖାଇ ଅର୍ଥାତ୍ ଦେଶ ଭୂଇଁକି ଖାଆଇବାର ଯେବେ ଇଛା, ତେବେ ବାବୁ, ଗାଆଁକୁ ଆଖି ଫେରାଅ । ଗଢ଼ ତାଙ୍କୁ ତମ ମନ ମାଫିକେ ସହର କରି । ସହର କାହିଁକି ?—ସହରଠୁଁ ଅଧିକ ସୁବିଧା ତମକୁ ମିଳିବ ଏଇଠି,—ଏଇ ପଲ୍ଲୀ ଗାଆଁରେ— ଏଇ ନଈ ନାଳ ବଣ ଜଙ୍ଗଲ ଭିତରେ ।

ରବି—ଏଠି ରହି କି କାମ କରିବା ? ଦିନ ଯେ ସରିବ ନାହିଁ ଖାଲି ବସି ବସି ।

ଉମେଶ—ସେଇଥି ପାଇଁ କହୁଚି ମିଳିମିଶି ଗୋଟାଏ କିଛି କରା-ଯାଉ । ଆମେ ବାପ ପଇସା ପାରି ଯୋଗା ହୋଇ ଏକା ପେଟ ପୋଶିଲେ—କୁକୁର ବି ପେଟ ପୋଷେ ଭାଇ ! ମୋର ତ ବାବୁ ଏଇ ଧାରଣା । ତୁମେମାନେ ରାଗ ବା ଗାଳି ଦିଅ ।

ରବି—(ତାଳିମାରି) ମୁଁ ଉମେଶଙ୍କୁ ସ୍ୱାଗତ କରୁଛି । ଅତି ଠିକ୍ କଥା ସେ କହିଛି ।

ଉମେଶ—ମୁଁ ଭାବୁଛି, ଗୋଟେ ଯୌଥ କାରବାର କରାଯାଉ । ଆଜିକାଲି ଅନେକ ରକମର ବାଟ ଫିଟିଛି । ବାଛି ନେଲେ, ହେବ । ସେଇଥି ପାଇଁ ତମମାନଙ୍କୁ ଡାକିଛି ଆଜି ମୋ ଘରକୁ। ଗୋଟାଏ କିଛି କରିବାକୁ ହେବ ।

ରବି—ଭଲ ପ୍ରସ୍ତାବ । ଗାଆଁ ଲୋକଙ୍କୁ ଜୀବନ ଦିଅ, ଆଲୋକ ଦିଅ ତୁମେ ଯୋଗା ଲୋକମାନେ । ଆଉ ପଳାୟନ-ପନ୍ଥୀ ପରି ଗାଁ ଛାଡ଼ି ସହରକୁ ଯିବାର ମନୋବୃତ୍ତି ଛାଡ଼ ।

ଶଶୀ—ବେଶ୍, ମାନିଲି ତମ କଥା । ବ୍ୟବସାୟଟା ଭଲ । ମାତ୍ର ଧନ

ଥିଲେ ବହୁତ ବୁଦ୍ଧି ଦରକାର, କିନ୍ତୁ ମା ଲକ୍ଷ୍ମୀ ସେ ଧର୍ମନେବାକୁ ନାରାଜ ଆମକୁ ।

ଉମେଶ—ଦେବେ ଦେବେ, ଧନ ଦେବେ, ପୂଜା କର, ସାଧନା କର । ଏ ମଧ୍ୟ ଏକ ଯୋଗାଭ୍ୟାସ ।

ଉମେଶ—ନାଁ ନାଁ କଥାଟା ଉଡ଼ାଇ ଦିଅ ନାହିଁ । ମୂଳଧନ ବୁଝ । ଶଶି କହୁଛୁ ଠିକ୍ ।

ରବି—ହଉ ହେଲା, ଧନୀ ତ ଆମ ଭିତରେ ରମେଶ । ସେ କିଛି ମୂଳଧନ କାଢ଼ୁ ।

ଶଶି—ଯେମିତି ହଉ ଧନ କାଢ଼ିବାକୁ ହେବ । ବ୍ୟବସାୟ ମୁଁ ଠିକଣା କରିବି । ତୁମେମାନେ ତ ଜାଣ, ହୀରାକୁଦରୁ ବିଜୁଳି ଶକ୍ତି ସହଜରେ ପାଇବା, ଅଳ୍ପ ଖର୍ଚ୍ଚରେ । ତା ପଛକୁ ରାଉର କେଲା, ପାରାଦ୍ୱୀପ ବନ୍ଦର । ନାନା ଉପାୟ ଖୋଲି ଆସୁଛି । ଏଇ ହେଲା ମୌକା । ରମେଶ ! କଅଣ କହୁଚ ? ଅରୁଣୋଦୟର ଏଇ ହେଲା ପ୍ରଥମ ଆଭା । ପ୍ରଭାତ ହେବା ପୂର୍ବରୁ, ଜଗତ ଜାଗିବା ପୂର୍ବରୁ—ଆମକୁ ପ୍ରସ୍ତୁତ ହେବାକୁ ହେବ । ତେବେ ଯାଇ ସାରା ଦିନର କର୍ମ-ସୂଚୀ ନିର୍ଦ୍ଦିଷ୍ଟ ଭାବରେ ଆମେ ସମ୍ପୂର୍ଣ୍ଣ କରିପାରିବା । ମୋର ବକ୍ତବ୍ୟ ଏତିକି ।

ଉମେଶ—ରମେଶ ଉତ୍ତର ଦେଉ ବର୍ତ୍ତମାନ ।

ରମେଶ—ଭାଇ, ମନୁଷ୍ୟ ଅନେକ ସମୟରେ ବାହାରେ ଥାଇ ଯାହା ଦେଖେ, ଯାହା ଶୁଣେ, ଯାହା ଅନୁମାନ କରେ, ସେ ସବୁ କଅଣ ସତ୍ୟ ବୋଲି ତୁମ ମାନଙ୍କର ଧାରଣା ?

ରବି—ନା, ଠିକ୍ ତା ନୁହେଁ, ତେବେ—

ରମେଶ—ସେଇ 'ତେବେ'ଟି ତୁମେ ମୋ ନିକଟରେ ହିଁ ଦେଖିବାକୁ ପାଇବ ।

ଶଶୀ—ଅର୍ଥାତ୍ ?

ରମେଶ—ତୁମେମାନେ ଜାଣ ତ ଭାଇ, ମୁଁ ପୋଷ୍ୟ ପୁତ୍ର ! ପୂର୍ବ ଜନ୍ମରେ ତପସ୍ୟା କରି ଭଗବାନଙ୍କୁ ବୋଧହୁଏ ବର ମାଗିଥିଲି—ଦେଖିବି ପ୍ରଚୁର ଧନ, ଶୁଣିବି ଟଙ୍କା ଗଣିବାର ଶବ୍ଦ । ଦେଖିବି, ଶୁଣିବି—କିନ୍ତୁ ତାର ଉପଭୋଗଟା ମୋ କର୍ମରେ ନୁହେଁ । ଏଇ ଅବସ୍ଥା ମୋର । ତୁମେମାନେ ତ ମୋ ପାଳକ ପିତାଙ୍କୁ ଜାଣ, ସେ କଅଣ ଏସବୁ ମହତ୍ କାର୍ଯ୍ୟରେ ଟଙ୍କା ଖଟାଇବାକୁ ରାଜି ହେବେ ?

ରବି—ତାଙ୍କୁ ରାଜି କରାଇବାକୁ ହେବ ।

ରମେଶ—ନଚେତ୍ କିଛି ଉପାୟ ଅବଲମ୍ବନ କରିବାକୁ ହେବ, ଯେପରି ସେ ରାଜି ହେବେ ।

ରବି—କଅଣ ହେବ ସେ ଧନ, ଗୋଟିଏ ସ୍ଥାନରେ ଗଦା ହୋଇ ? ତା ଛଡା, ସେ ତ ନିଜେ ଏ ଟଙ୍କାର ଲଭ୍ୟଟା ପାଇ ପାରିବେ । କିଛି ତ ଅନ୍ୟାୟ ନୁହେଁ; ବରଂ ଲଭର ଆଶା ବେଶୀ ।

ରମେଶ—ସେତିକି ବୁଝାଇ ପାରିବ କିଏ ତାଙ୍କୁ ?

ଶଶି—ଏଥିରେ ମୁଁ ରମେଶ ସହିତ ଏକମତ । ତାଙ୍କୁ ବୁଝାଇବା ଭଳି ମନୁଷ୍ୟ ଜନ୍ମ ହୋଇଛନ୍ତି କି ନାହିଁ, ମୋର ସନ୍ଦେହ ।

ରମେଶ—ଆଚ୍ଛା, ଆଉ ବର୍ତ୍ତମାନ ସେ କଥା, ମୁଁ ଆଗେ ସନ୍ଧାନ ନିଏଁ । ସାଧ୍ୟା କରିବାକୁ ହେବ,—ଷଡଯନ୍ତ୍ର କରିବାକୁ ହେବ, ବୁଝିସୁଝି କହିବି । ତେବେ ବ୍ୟବସାୟ ଲାଗି ସମସ୍ତେ ପ୍ରସ୍ତୁତ ତ ?

ସମସ୍ତେ—ନିଶ୍ଚୟ, ନିଶ୍ଚୟ; ପ୍ରାଣ ପାତରେ ଆମେ ଲାଗି ପଡ଼ିବୁଁ ।

ରମେଶ—ହଉ, ଆଜି ଏ କଥାର ଏଇଠି ଇତି ହେଉ ନାହିଁ ।

ମୁଁ ନିଜେ ସମସ୍ତ ନେଉଛି । କିନ୍ତୁ ତୁମେମାନେ ସ୍ୱୀକାର କର ।

ରବି—ଧନ୍ୟବାଦ !

ଶଶୀ—ଉଠାଯାଉ ତା ହେଲେ ବର୍ତ୍ତମାନ ।

ସମସ୍ତେ—ହଁ, ଉଠ ।

ରବି—ଜୟ ପଲ୍ଲୀ ମାଆ ଙ୍କ ଜୟ ! ଜୟ ବ୍ୟବସାୟ ର ଜୟ !

ସମସ୍ତେ—ଜୟ ସାଧନା ର ଜୟ !

( ସମସ୍ତେ ଉଠିଲେ )

—ଦୃଶ୍ୟ ପରିବର୍ତ୍ତନ—

## ଦ୍ୱିତୀୟ ଦୃଶ୍ୟ

(ଅଳନ୍ଦ—ଜଯାନନ୍ଦଙ୍କର ପୋଷ୍ୟପୁତ୍ର ଶ୍ରୀମାନ୍ ରମେଶଚନ୍ଦ୍ର, ଅଦୂର ନେପଥ୍ୟରୁ କଅଣ ଗୋଟାଏ କଥାବାର୍ତ୍ତା କାନେଇଁ, ଅଶାନ୍ତ ମନରେ ଅନ୍ୟ ମନସ୍କଭାବେ ବୁଲୁଥିଲେ । ହଠାତ୍ ତାଙ୍କ ପଛରୁ ତାଙ୍କୁ ଡାକନ୍ତି ତାଙ୍କର ସହପାଠୀ ଉମେଶ । ରମେଶଙ୍କର ଚମକ ଆସିଲା ଉମେଶଙ୍କ ଡାକରେ )

ଉମେଶ—ଆରେ ରମେଶ !

ଉମେଶ—( ହଠାତ୍ ତାଙ୍କୁ ବାଧା ଦେଇ । ଉମେଶ, ମୁହଁ ପାଖେ ବଣି ଆଙ୍ଗୁଠି ଦେଖାଇବ ଅନୁଚ୍ଚ ସ୍ୱରରେ କହିଁଲା ) ଚୁପ୍ । ( ଅଦୂର ନେପଥ୍ୟରୁ ଶୁଣାଗଲା ଦୁଇଜଣଙ୍କର କଥାବାର୍ତ୍ତା—କଏ ଜଣେ ଯେମିତି ବିରକ୍ତ ହୋଇ କହିଲା )—ଚୁପ୍ କର ।

ଅନ୍ୟଜଣେ—ମ୍, ଭାତ ଥାଳ ବଢ଼ାହୋଇ ରହିଲା—କଅଣ ଏମିତି ମେଘ ଫାଟି ପଡୁଛି ଦାଣ୍ଡରେ ! କୋଉ କାମ ଏମିତି ବିଗିଡ଼ି ଯାଉଛି ? କଅଣ କରେଇ ନା ବାଟେଇ ? ଖାଇକରି ଯାଅ, ନାଁ—ଲୁହା ହଉଛି,—ଚୁପ୍‌କର ।

ଉମେଶ—( ରମେଶକୁ ଠାଉଛି, କଥାଟା କଅଣ ବୁଝିବାକୁ ଏଇ ଅବସରରେ )

ରମେଶ—ଚୁପ୍ କର (ଅନ୍ତରାଳକୁ ନେଇ ଲୁଚିଗଲା)

ରଘାନନ୍ଦ—( ବାହାରକୁ କହି କହି ଆସିଲେ ) ହଁ, ହଁ; ତୁମେ ଚୁପ୍ କର । କହିଲି ତ ମୋତେ ଲୋକ ନାହିଁ । ତମ ପେଟ ଜଳୁଥିଲେ ଅଣ୍ଡା କରିପକାଅ । ଅଲକ୍ଷଣୀ, ହୁଃ, ଜାଣେ ପରା—ଭଲରେ ମନ୍ଦରେ ମଣିଷ କୁଆଡ଼େ ଯିବ କି ଆସିବ, ପଛରୁ ଏ ଅଲକ୍ଷଣୀର ଗୋଟେ ନାଁ ଗୋଟେ କିଛି ବରାଦ ଥିବ । ଯାହା ମୁଖରେ ନାଶ !

ନେପଥ୍ୟେ—ଭଲ ହେଲା, ତେବେ ଦଉଛି ଭାତ ପଖାଳ—ମୋର ଆଉ କିଛି ଦୋଷ ନାହିଁ । ତୁମେ ଖାଅ ନ ଖାଅ—ଆରେ ଭଲର ପରା କାଳ ନାହିଁ ।

ରଘା—ହଁ, ହଁ, ତୁମେ ଘରକୁ ଯାଅ । ଲାଜ ନାହିଁ । ମାଇପି ଲୋକ ଦାଣ୍ଡ ମେଲାକୁ ଆସି ଏଡ଼େ ପାଟି କରି ସାତ ସାଇ କମ୍ପାଇ ସୁଆଲ ଜବାବ କରାହଉଛି ! ଭଲଲୋକ ଘରର ଝିଅ ହୋଇ-ଥିଲେ ସିନା ବୁଝନ୍ତା—ଯା, ଘରକୁ ଯା—ଏଠିକି ଆସି ତୁଣ୍ଡ ବାଇଦ ବଜାଇବା ଦର୍କାର ନାହିଁ ।

ନେ—ହଉ, କେଡ଼େ ଲାଜଥିଲା ମରଦ ! କେମିତି ଲୋକ ନ ଥାଏ, ମୁଁ ଫେର ଦେଖିବି । ମୁଁ ଜାଣିଲିଣି ଯେ, ସେଇ ରମେଶ ଲାଗି ମୋ ଉପରେ ସବୁବେଳେ ଗରଗର । ମୁଁ କଅଣ ମଣିଷ ନୁହେ ? ଆଚ୍ଛା ହଉ, ଥା ଥା, ରହ ଆଜ ସେଇ ଦାଣ୍ଡରେ ।

(ଧଡ଼କରି କବାଟ କିଳି ଗୁଲିଗଲେ)

ରଘା—(କିଛି କାଳ ନେପଥ୍ୟକୁ ଗୁହିଁ) ହଉ; ହଉ, କେତେ ନାଚୁଛୁ ନାଚ । ଆଉ ଦି'ଦିନ । ଭାଙ୍ଗିଯିବ ଯେ ଗୋଡ଼ରୁ ବଳ ! ନଟା, ନଟା !

ନଟା—(ଦଉଡ଼ି ଆସି) ଆଜ୍ଞା !

ରଘା—(ଗୁରିଆଡ଼କୁ ଗୁହିଁ) ଗଲା ?

ନଟା—ସବୁ ଠିକଣା କରଦେଲି, ଆଜ୍ଞା !

ରଯା—( ଏଣେତେଣେ ଚାହିଁ କାଳେ କିଏ ଶୁଣୁଥିବ ମନେକରି )
ଆଉ ଗୋଟେ କାମ କର—

ନଟା—ଆଜ୍ଞା !

ରଯା—ତୁ—ତୁ—ଏଇନେ ଯେଠିକି (କଥା କହୁ କହୁ ଚାହିଁଯାଇ )
—ନାଁ—କିଏ ଶୁଣୁଥିବ । ଚାଲ, ଦାଣ୍ଡ ଆଡ଼କୁ ଚାଲ ।
( କାନ୍ଧରେ ହାତ ଦେଇ ନେଇଗଲେ )

( ରମେଶ ଓ ଉମେଶ ବାହାରରୁ ଆସିଲେ )

ରମେଶ—ଶୁଣିଲୁ ? ଏଇଥିପାଇଁ କହୁଥିଲି ଚୂପ୍‌କର । ବୁଝିଲୁ କିଛି ?

ଉମେଶ୍—ନାଁ ତ । ବାବା ତମର ରାଗିଛନ୍ତି ବୋଧେ, କାରଣ କଅଣ ?

ର—ରାଗ, ମୁଁ ହିଁ ତାର କାରଣ । ସେ ଅନେକ କଥା—ତୁ ଭାଇ, ଟିକିଏ ଏଭଳିବେଳେ ପାଖରେ ମୋର ଛିଡ଼ା ନୋହିଲେ, କାନ୍ଧ ନ ଦେଲେ—

ଉ—ନିଶ୍ଚୟ, ତୁ ମୋର ବନ୍ଧୁ । ବନ୍ଧୁ ପଣିଆ ବିପଦ ବେଳେ ଜଣା ପଡ଼େ ସିନା !

ର—ଧନ୍ୟବାଦ ଭାଇ !

( ଘର କବାଟରେ ହାତ ମାରିଲେ )

ନେ—କିଏ ? କଅଣ ପେଟ ଜଳିଲା କି ? ପୁଣି କେଉଁ ମୁହଁରେ ଖାଇବାକୁ ଆସୁଚ ମ ? ମୋର ଏଇନେ କବାଟ ଫିଟେଇବାକୁ ତର ନାହିଁ । ରହ ।

ର—( ପୁଣି ଘନ ଘନ କବାଟରେ ମାରିଲେ )

ନେପଥ୍ୟେ—ଆହେ, ରହ, କବାଟ ଭାଙ୍ଗନାଇଁ । କହୁଚ ପରା ରହ ବୋଲି । କଅଣ ତର ସହୁନାହିଁ ? ଲୋକ ହେଉନାହିଁ ପରା ! ଟିକିଏ ରହ—ଦେଖିଚୁ ଏଇମିତି ବହୁତ ଲୋକ—ଋଷି କଣ ନ ଖାଇ ନ ପିଇ ରହୁବାଟା । ରହୁନା—ମୁଁ କବାଟ ଫିଟେଇବ ନାଇଁ, ଯାଃ—

ରମେଶ—ବୋଉ ( କବାଟରେ ମାରି ) ମୁଁ ପରା !

ନେପଥ୍ୟେ—କିଏ ? ରମୁ କିରେ ? ଯାଉଚି ଯାଉଚି ( କବାଟ ଫିଟାଇ ଦେଲେ । ରମେଶ ଓ ଉମେଶ ଭିତରକୁ ଗଲେ )

—————

## ତୃତୀୟ ଦୃଶ୍ୟ

[ ରସାନନ୍ଦଙ୍କ ଦାଣ୍ଡଘର, ରସାନନ୍ଦ ଓ ଜଣେ ବ୍ରାହ୍ମଣ+କନ୍ୟା ତ୍ରିଠିକଣା କଲ୍ବାକୁ ଘଟକ+ଏକାଠି ବସି କଥାବାର୍ତ୍ତା ହେଉଥିଲେ )

ରସା—ଭୋଜନ ହୋଇଚ ନା ?

ବ୍ରାହ୍ମଣ—ଭୋଜନ ? ଭୋଜନ ଆଉ ?—

ରସା—( କଥାରେ ଆବୁଡ଼ା ପଡ଼ ) ହଁ, ହଁ, ଆଉ ତା କଅଣ ଏତେ ବେଳଯାଏଁ ନ ହୋଇ ଥାଆନ୍ତା ? ବେଳ ମୁଣ୍ଡ ଉପରୁ ଗଡ଼ି ଗଲ୍ଣି ଟି ! ମୁଁ ଭୁଲ୍‌ରେ ପଚ୍ଚରି ଦେଲି । ଭୋଜନ କେତେବେଳୁ ବଡ଼ିଥିବ ମିଶ୍ର ଆପଣଙ୍କର !

ବ୍ରାହ୍ମଣ—ନାଇଁ, ଆଉ ଭୋଜନ ହେଲା କୋଉଠି ? ଘରଠୁଁ ତ ସକାଳ ସାତରେ ବାହାରିଛୁ । ଗଲି ତେଣେ ଭିଡ଼ମାଇଲ୍ କ ଘୁରି ମାଇଲ, ଫେରେ ସେଇଠୁ ତ ଲମ୍ବେ ଲମ୍ବେ ଏଠିକି ତିନ ଘୁରି ମାଇଲ ଆସୁଛୁ ।

ରସା—ଆହା ହା ! ତେବେ ତ ମୁଁ ଆପଣଙ୍କୁ ବେଶୀ ବେଳ ଅଟକାଇବା ଠିକ୍ ହବ ନାଇଁ । ନୋହିଲେ ଅବା ଆମେ ଏଠି ଗଣ୍ଡେ ଜଳଖିଆ ଦବା । ସେଥିରେ କି ମନ ତୃପ୍ତ ହେବ ? ଜଳଖିଆ ନୁହେଁ ସେ ଜହର ଖିଆ—ଘର ପଖାଳ ସାଗ ଖରଡ଼ାକୁ ବଜାରର ଲଡ଼ୁ ରସଗୋଲା ପାଏ ନାଇଁ । ହଉ ହଉ, ଆପଣ

ତେବେ ଠିକେ ଠିକେ କଥାଟାକୁ ସାର ଦିଅନ୍ତୁ—ଫେର୍ ଘରକୁ ଦି ତିନ ମାଇଲ ଗଲେ ସିନା ହିତ—

ବ୍ରାହ୍ମଣ—ଦି ତିନ ମାଇଲ କଅଣ କହୁଛନ୍ତି ? .ବଡ଼ା ବୁଢ଼ମାଇଲ ବାଟଟି ! ( ଅଣ୍ଟା ଦେଖି ) ପାନ ଚୂନଟିକକୁ ବି ଅଣ୍ଟାରେ ଅଧଲୁଏ ଆଣିନାହିଁ । ତେଣେ ପୁଣି ପ୍ରଳୟ କ୍ଷୁଧା ।

ରସା—ହିଁ, ହବଣି ତ ! ଦିଅନ୍ତୁ, କଥାଟା କଅଣ ହେଲା ବେଗେ ସାରିଦେଲେ—

ବ୍ରାହ୍ମଣ—କଥାଟା ଆଉ କଅଣ ?—

ରସା—ହିଁ, ଟିକଏ ରହନ୍ତୁ । ମୁଁ—( ଉଠି ଦ୍ୱାର ଆଡ଼କୁ ଯାଇ ଡାକଲେ ) ନଟା, ନଟା !

ନେପଥ୍ୟେ—ଆଜ୍ଞା !

ରସା—ହିଁ, ସେଇଠି ଟିକଏ ଥା, ଦୁଆରେ ।

ନଟା—(ନେପଥ୍ୟରୁ) ଅଛୁ ପରା !

ରସା—ହିଁ, ଥା, କେହି ଆସିଲେ ଖଣ୍ଡିକାଣ ମାରିଦବୁ । ( ବ୍ରାହ୍ମଣ ପାଖକୁ ଆସି ) ହିଁ, କହନ୍ତୁ ।

ବ୍ରାହ୍ମଣ—ଆପଣ ଟିକଏ ଅପେକ୍ଷା କରନ୍ତୁ । ଆମ ଗାଁର ଗୁଡ଼ିଆ ଏଇଠି ଦୋକାନ ଦେଇଛି । ମୁଁ ମନାଏ ପାଣିପଣା କରି ଦେଇ ଆସେଁ । ହିଁସା ଉଡ଼ି ଯାଉଛି ମୋର । (ଉଠିଲେ)

ରସା—( ବ୍ରାହ୍ମଣଙ୍କୁ ଧରି ) କେତେବେଳେ ଆଉ କି ? ମୁଁ ବି ତ ଖାଇ ନାହିଁ । କଥାବାର୍ତ୍ତା ସାରିଦେଇ ଏକାବେଳେ ତ ଆପଣ ଗାଁକୁ ସଳଖି ଯିବେ । ନୋହିଲେ ଏଇଠି ପାଣି ମନ୍ଦେ ସାରି ଦିଅନ୍ତୁ । ଆମ କୂଅ,—ଆହା ! ଭଲ ପାଣି । ଗାଁଆର ସମସ୍ତେ ଗରାଏ ଗରାଏ ନେଉଛନ୍ତି । ନଟା ! ନଟା !

ନଟା—( ନେପଥ୍ୟରୁ ) ଆଜ୍ଞା—

ବ୍ରାହ୍ମଣ—ନାଇଁ ନାଇଁ ବେଳକବେଳ ନାଁ—ଖାଲି ପାଣିଗୁଡ଼ା ପିଇଲେ ପେଟ ଆଉଜଣ୍ଡେଇ ହବ । ମୁଁ ତା ଦୋକାନରେ ମୁଠେ ଚୂଡ଼ାକ ମୁଡ଼ି ପାଟିକି ପକେଇ, ଢୋକେ ପାଣି ପିଇଦେଇ ଆସୁଚି !

ରମା—ସେ କଅଣ ସେମିତି ଧବ ?

ବ୍ରାହ୍ମଣ—ଆମ ଗାଁର ସେ—ଭଲା ଲୋକ ! ବାଙ୍କା ଦେବ ସେ !

ରମା—ମୋତେ ଖାଲି ପଦେ କହି ଦେଇ ଯାଆନ୍ତୁ—କନ୍ୟାଘର ରାଜ କି ନାଇଁ ।

ବ୍ରାହ୍ମଣ—ହଁ ରାଜ ଅଛନ୍ତି ।

ରମା—ହଁ, ରାଜ ନ ହେବ ବା କାହିଁକି ? ଆଜ ଧନ ଅଛି କାହାର ? ଆମକୁ ମାଆ ଲକ୍ଷ୍ମୀ ଛାଡ଼ିଁଛନ୍ତି ବୋଲି କଅଣ ସମସ୍ତଙ୍କୁ ଛାଡ଼ିଁବେ ?

ବ୍ରାହ୍ମଣ—ହଁ କଥା ସେଇଆ ।

ରମା—ଆଉ ଆମର ପୋଷ୍ୟପୁତ୍ର କଥାଟାକୁ କିଛି କହି ନାହାନ୍ତି ? (ଏଣେ ତେଣେ ଅନାଇଁ)

ବ୍ରାହ୍ମଣ—(କାଶିଲା, ଏଇ ଅବସରରେ ) ତାଙ୍କୁ—

ରମା—(ବାଧାଦେଇ) ଭୁଲିଗଲେଣି, ଭୁଲିଗଲେଣି, କଏ ଆସିଲା କି କଅଣ ?

ବ୍ରାହ୍ମଣ—ନାଇ, କେହି ନାଇଁ ।

ରମା—କିଛି ଖାଇଲା ପରି ! [ଚଞ୍ଚଳ ହେଲେ]

ବ୍ରାହ୍ମଣ—ନାଇଁ, ମୁଁ ଖାଇଲି—ତଣ୍ଟି ଶୁଖି ପାଉଛି । ମୁଁ ଆସେ · ·

ରମା—ଆପଣ ? ହଁ, ଯିବେ ତ । ସେ—ସେ କଥା ତ ତାଙ୍କୁ କିଛି କହିନାହାନ୍ତି ?

ବ୍ରା—ନାଁ ।

ରସା—ଆଉ କହିଲେ ବା ଯାଏ ଆସେ କଅଣ ? ପୋଷ୍ୟପୁତ୍ର ତ ଆମେ କରିନୁଁ, କରିଛନ୍ତି ଆମ ଘରଆଡ଼େ ଗୃହିଣୀ । ତାଙ୍କ ଭାଇଙ୍କ ପୁଅ ସେ । ଯେ ସେଥିକି ତ ଆମର ନାମଞ୍ଜୁରି, ପୋଲି କବାଲଟେ ହେଇ ପାଞ୍ଚବର୍ଷ ହେବ ରହିଛି ଯେ, ରହିଛି । କୋଉ ଆମେ ଲେଖା କରି ଦେଲୁଣି ? ନା—ନାମ ଜାରି ହେଲାଣି ? ଖାଲି ତାକୁ ପାଠ ପଢ଼େଇବା କଥା କଲେଜରେ ! ତାଇ ମଧ୍ୟ ଆମେ ଭଲରେ ବୁଝୁନାଇଁ କି ଦିଆ ନିଆ କରୁନାଇଁ ।

ବ୍ରା—ହୁସିଆର ଲୋକ ଆପଣ, ଅଚ୍ଛା କଥା କହୁଛନ୍ତି !

ରସା—କହେ ! ହୁସିଆର କାହିଁକି ନ ହେବୁ ? ଆମର କଅଣ ବଳ ନାଇଁ, ବୟସ ନାଇଁ କି ଧନ ନାଇଁ । ଲୋକଙ୍କର ଅଶୀରେ ପୁଅ ହଉଛନ୍ତି । ମୁଁ ଏବେ କୋଉ ବୁଢ଼ା ? ଯେ ଘରଣୀ ନୋହିଲା, ଦୋମଣି ହବ, ତିସରି ହବ—ଗଲୁ । ଦେଖିବା—କେମିତି ପୁଅ ନ ହବ ! ଆଶା ବୈତରଣୀ ନଦୀ—କଥାରେ କହିଛି ଆଶାରେ ମରେଁ, ଆଶାରେ ତରେଁ । ଜୀବ ଥିଲା ତକ ଆଶା ଅଛି । ଏଇଥିକି ଆମେ ଜାଣିବା ଶୁଣିବା ଲୋକ ହେଇ ଗୋଟେ ପୋଷା ପୁଅ କରି ବସିବା ! କଥାରେ ଅଛି ପରା—ପୋଷା ପୁଅ—ଗୁଞ୍ଜା ରୁଅ, ତିନି ଡାକରେ ନ କରେ ଓ ! କୋଉ ବିବେକ ପଣିଆ ସେ ! କି କଅଣ ମିଶ୍ରେ ? କହୁନା—

ବ୍ରା—ହଁ ସତ କଥା ।

ରସା—(ମିଶ୍ରଙ୍କ ହଲାଇ) ନା—କଥାଟା କଅଣ ମନକୁ ଗଲାନି ? ନା କହୁନା କାହିଁକି ?

ବ୍ରା—ମୁଁ ଯାଉଛି—କହିବି ଆଉ କଅଣ ? ମୋ ହେଣ୍ଡ୍ରୋଲୋଟଟା ଫେରେଇ ଦେବାକୁ କହିଥିଲେ ପରା !

ରଘୁ—କହନାହିଁ, କହନାହିଁ । ସକାଳ ଓଳି ତମାମ ସେଇଟାକୁ ଖୋଜି ଖୋଜି ଥକିଲି । ଆଖିର ମନ ବରଜିଆରେ, ଆମ ଘରେ ମୁହଁ ଫୁଲଫୁଲ । ଚେଣେ ବଡ଼ା ଘତ ଶୁଖୁଛୁ । ନ ମିଳଲ୍-କୋଉଠି ଅଛୁ, ନଶ୍ଚେ ମୁଁ ତାକୁ ଖୋଜି ରଖିବ କାଲିକି । ଆପଣ ହନ ଫିନ ତାଙ୍କ ଘରୁ ଠିକଣା କରି କାଲିକି ଥରେ ଏଇ ବେଳକୁ ବୁଲିଗୁଲି କଲ ପରି ଚୁଲି ଆସିବେ । ସେଠା ଖବରଟା କହିବେ, ଏଣେ ହାଣ୍ଡିନୋଃଟାକୁ ଧ ନେବେ । ଯାଆନ୍ତୁ ।

ବ୍ରା—ଆଉ ଫେର କାଲି ? ୮।୧୦ ମାଇଲ୍ ବାଟ !

ରମା—ହଁ, ଭେଣ୍ଡିଆ ଲୋକ; ବରଂ ଘରୁ ଧକାକୁ ଗାଧୋଇପଡ଼ି ମୁଠେ ପଖାଳ ଚୋବାଣୀ କରି ଆସିଥିବେ ସେ ସୁବଧା—କାହିଁକି ନା—ଆମ ଶୂଦ୍ର ଘରେ ତ ଆପଣଙ୍କର ହାତ ବୁଡ଼ିବ ନାହିଁ ।

ବ୍ରା—ରାମ ! ରାମ ! ତା କେମନ୍ତେ ହେବ ? ପ୍ରାଣ ଗଲେ ତା ହବ ନାହିଁ ।

ରଘୁ—ସେଇ କଥା, ସେଇ କଥା—ମୁଁ କହୁଚ ପରା ! ଆଉ ଜଳ-ଖିଆ କଥା ଯେ—ଦୋକାନ ଉକମ ତ ଆମ ଘରେ ପନେଣି ନାହିଁ । ମାଛ, ମଣା ନାନାଦ କଥା—ହଉ ଯାଆନ୍ତୁ । ନଶ୍ଚେ ଠିକଏ କାଲିକି ଦନଟା ସ୍ଥିର କରି ଆସିଥିବେ । ଗଣାପୋଗୁ ତ ଭୁଣ୍ଡେ ଭୁଣ୍ଡେ ସରିଛୁ ! ନା କଅଣ ?

ବ୍ରା—ହଉ, ମୁଁ ଯାଉଚ ।

ରଘୁ—ହିଁ, ଓଳିଗି । (ସଙ୍ଗରେ ଯାଇ ବିଦାୟ କରି) ନତା; ନତା !

ନତା—ଆଜ୍ଞା

ରଘୁ—ଆ—

ନତା—ଆଜ୍ଞା । (ପ୍ରବେଶ)

ରମା—ହଁ । ଆମର ଯେଉଁ ବାହାଘର ହବ କ ନାଇଁ ଠିକଣା ନାହିଁ । କନ୍ୟାଟି କେମିତି କହୁ ଜଣାନାଇଁ । ଏ ଗୋସାଇଁ ଗୋଟେ ସୂନ୍ଦ କରଛୁ । ଆସିକଣ ଏଠି ଯେବେ ଭୋଜନ ପକେଇ, ପଦେ କଥା କହ୍ବ ଭୁଲିଯିବ । ବଡ଼ ମିଆଁଣିଆଁ ! ମୁଁ ରସାନନ୍ଦ ! ମୋତେ ବଳଯିବ ସେ—ଟୋକା ଗୁଣ୍ଡେ !

ନତା—କଅଣ ହେଲ୍ ଫେର୍, ଆଜ୍ଞା !

ରସା—ଆଉ ହବ କଅଣ ? କନ୍ୟାକୁଳ ଗ୍ରଜ ।

ନତା—ହରିବୋଲ, ହରିବୋଲ । (ହସି ହସି କହିଲା)

ରସା—(ଚଞ୍ଚଳ ହୋଇ) ଆରେ ଚୂପ୍ ଚୂପ୍, ସେ ଘୋଡାମୁହାଁ ରମେଶ କୋଉଠି ଥିବ ।

ନତା—ସବୁ ଠିକ୍ ହୋଇଗଲା ନା, ଆଜ୍ଞା !

ରସା—ସ୍ୟାଉ୍ ସବୁ ଠିକ୍ ସେ ! ବାକି ଦବା ନବା କଥା କହୁ ପଡ଼ି ନାହିଁ । ଆମ ପଣ ଘରବର, ଧନ ଜନ, ଗୋପ ଲକ୍ଷ୍ମୀ—ମାହାଳିଆ ମହାଳିଆରେ ସାଉଦା ? କହୁ ଯୌତୁକ ଅସୁ ।

ନତା—ହଁ, ଆସିବ ନାଇଁ ଆଉ କଅଣ ? ଆଜିକାଲି ତ ଚ୍ଳୁଛି ସାଇକଲ, ଘଡ଼ି, ଚେନ୍, ପାଟ; ମୁଦି, ସୁନାଗହଣା—

ରସା—ଆରେ ସେ ଗୁବକ କଅଣ ହବ ମ ? ଭୁଇଁ ମାଣେ ଦ'ମାଣେ କ ସହର ବଜାରରେ ଘର ଖଣ୍ଡେ ଅଧେ କଥା କହ । ଆଉ ଏ ବଏସେ ମୁଁ କଅଣ ସାଇକେଲ ଚଢ଼ି ବୁଲିବ ?

ନତା—କେବକୁ ପୁଣି ବିଦ ଠିକଣା କରିବାକୁ ହେଲା ?

ରସା—ଆରେ, ଏଇନେ କଅଣ ସେ ସବୁ କହ୍ଣ ଠିକଣା ହେଲଣି ? ତୁ କଅଣ ମୋତେ ଏଡ଼କ ଗର ଭୁସିଆର ମନେ କରଚୁ ? ବାହାଘର ଟି ! ଲମ୍ବା ଜୀବନ ଯାକର ସଉଦା । କନ୍ୟାକୁ ନ ଦେଖି ନ ଶୁଣି ବାହାଘର ? କାଳେ କାଣୀ, କୁଜୀ କ ବୁଢ଼ୀ-

ଟାଙ୍କୁ ବର ମିଳୁ ନ ଥିବ, ଏମନ୍ତ ଗୋଟେ କନ୍ୟା କୋଉଠି ଥିବ । ଆମ ବଂଶପକୁ ଖୁଣ୍ଟି ତାଙ୍କୁ ବେକରେ ବାନ୍ଧଦେବେ ?

ନଟା—ସତ କଥା, ସତକଥା ଆଜ୍ଞା ! ଧାତ କଥାରେ ପଣ୍ଡ ଭୁଲଏ । ମଧ୍ୟସ୍ଥ ଗୁରୁ ତ ଭଳ ବାହାପିଆ, ଲୋଖା । ତାଙ୍କ କଥା କଅଣ ? କନ୍ୟାଟି ଗୋଟିଏ ଖୁଣ୍ଡଲରେ ଗଢ଼ା ହୋଇଥିବ । ଚମ୍ପାଫୁଲ ପର ବର୍ଣ୍ଣ ହୋଇଥିବ । ବେଣୀ ଡେଙ୍ଗୀ କ ବେଣୀ ଗେଡ଼ୀ ହୋଇ ନଥିବ । ବଦ୍ଧ ପୁରପାର ହେଇଥିବ । ଚେମଣା ନେମିଣୀ କ ବେଣି କୋଦମା କୋଦମୀ ହୋଇ ନଥିବ । ଗୁଲେ ପେଟ୍ ହେଇ ନ ଥିବ, କ ଟାଉକା ଟକଲୀ ହେଇ ନ ଥିବ । ଏମିନ୍ତ ନାଁ । ଆଉ ଗୋଟେ ପେଗ୍ଣନାକା, ପୁଚ୍କା ଗାଲ୍, ଉଞ୍ଚୁ କପାଳୀ, ହାଣ୍ଡି ଖାଇ । ଛି ଛି ।

ରସା—ସେଇ କଥା । କହିଲୁ—କେମିନ୍ତ କନ୍ୟାଟିକୁ ଦେଖିବା ?

ନଟା—ସେକଥା ମୁଁ ଭାବ କର ଠିକଣା କରବ ନାଇଁ, ଆଜ୍ଞା ! ହଉ, ଆପଣ ଆସନ୍ତୁ ଭୋଜନକୁ, ଭୋକରେ ବ୍ରହ୍ମ ଜଳଲିଣି ।

ରସା—ଆରେ ରହ ମ ! କାହାକୁ କନ୍ୟା ଘରକୁ ପଠେଇବା ଆଗ କହିଲୁ ? ମରଦ ହେଲେ ତ ଚଳବ ନାଇଁ । ମାଇପି ଲୋକ ହେଇଥିବ; ଆମର ବଶ୍ୱାସୀ ଲୋକ ହେବ ।

ନଟା—ହଁ, ଖୁବ୍ ବଶ୍ୱାସୀ ହେଇଥିବ ନାଁ । ସାକ୍ଷାତ୍ ନଜ ଆଖିରେ ଜଳ ଜଳ କର ଦେଖିଲା ପର, ଦେଖି ଆସିବ । ତେବେ ସିନା !

ରସା—ଆଉ ?

ନଟା—ଦେଖିବା, ସେକଥା ଠିକଣା କରବା ନାଇଁ, ରହିଯିବ ? ଆସନ୍ତୁ ।

ରଘା—ଆରେ ରହ ମ ! କଅଣ ଗୋଟେ କଥା ଛାଣ୍ଡାଳ କରି ଗଲେ
ହବ ନାଁ ।

ନଟା—( ନେପଥ୍ୟକୁ ଗୃହିଁ ) ରମେଶ ବାବୁ କୁଆଡ଼େ ଆସୁଛନ୍ତି
କି କଅଣ !

ରଘା—ଏଁ ! ତୁ ଆ, ମୁଁ ଘର ଭିତରକୁ ଗୃଲିଯାଉଚି । ଖବରଦାର,
ସେ ଯେମିତି ଏ କଥାର ଗନ୍ଧ ଟିକଏ ପାଇବ ନାହିଁ ।

ନଟା—ମୁଁ କଅଣ ଏଡ଼େ ଉଲୁ ହେଇଛି ?

ରଘା—ହଁ, ହୁସିଆର ଥିବୁ । କଳକାଳ ଠୋକାଟି, ତାଙ୍କର
ଆଗରେ ପଛରେ ଗଣ୍ଡା ଗଣ୍ଡା ଆଖି, ପୁଞ୍ଜା ପୁଞ୍ଜା କାନ ।
( ଗୃଲିଗଲେ )

ନଟା—ଓହୋ ! ବାହା ହବ ବୋଲି ଭେକ ଶୋଷ ନାହିଁ ଯାଙ୍କୁ, ତା
ବୋଲି କାହାର ଆଉ ପେଟ ନାହିଁ ? ସମସ୍ତେ କଅଣ ବାହା
ହେବେ ଏଇ ପାକଲ ବାଳରେ ! ରାମ ! ରାମ ! ଦିନ ରାତି
କଟର କଟର ! ଓଃ ପାପ ଗଲା ।

( ରମେଶ ଆସିଲେ )

ରମେଶ—କିଏ ରେ, ନଟା !

ନଟା—( ହାଇମାରି ) ଆଜ୍ଞା !

ରମେଶ—ଏଠି କଅଣ କରୁଛୁ ? ବାବା କାହାନ୍ତି ?

ନଟା—କେଜାଣି, ଘରେ ଥିବେ ।

ରମେଶ—ତୁ ଏଠି କଅଣ କରୁଛୁ, ଏକୁଟିଆ !

ନଟା— ( ହାଇମାରି ) କିଛି ନାହିଁ ଆଜ୍ଞା ! ଖାଇବାକୁ ନାହିଁ,
ପିଇବାକୁ ନାହିଁ । ବସି ଭାବୁଥିଲି, କଅଣ କରନ୍ତି ଆଉ ?

ରମେଶ—କି, ଆଜି କାଲିଆ ଘୋଡ଼ାରେ ଚଢ଼ିନାହିଁ କି ?

ନଟା—କୋଉଠି କଏ ବାଟା ମିତ୍ରୁଛନ୍ତ ଯେ, କାଳିଆ ଘୋଡ଼ା ଚଢ଼ିକ ! ଦାଇ ଆସିଲାଣି । ନାକରୁ କାନରୁ ପାଣି ଦେଲାଣି ।

ରମେଶ—ଆଚ୍ଛା, ଆ ଆ···

ନଟା—ହରିବୋଲ ! ମୋ ଖାଉନ୍ଦ ସୁନା କୁକୁଡ଼ା ଉଡ଼ୋଉ ଥାଆନ୍ତୁ । ହରିବୋଲ ।

( ବାହେଁ ଗୁଳିଗଲେ )

———

## ଚତୁର୍ଥ ଦୃଶ୍ୟ

( ଉମେଶ ଓ ଘଟକ ବ୍ରାହ୍ମଣ—ଘଟକ ବ୍ରାହ୍ମଣ ଉମେଶଙ୍କ ଘରେ ଖାଇ ବସିଛନ୍ତି—ଉମେଶ ଆଉ ଗୋଟିଏ ଆସନରେ ପାଖରେ ବସିଛି )

ଉମେଶ—ସେ ବିଷୟରେ ଆପଣ ନିଶ୍ଚିନ୍ତ ଥାଆନ୍ତୁ ।

ବ୍ରାହ୍ମଣ—ନାଇଁ ଆଜ୍ଞା, ମୋର ସେତିକି ଡର, କାଲେ ନାଲିସ୍ କରି ଘର ଉଦ୍ଧ ଚେନାକ ଉଠାଇ ନେଲେ······

ଉ—ଟଙ୍କା ଖରଣଟାର କଥା ତ । ଯଦି ହ୍ୟାଣ୍ଡନୋଟଟି ହାତରେ ପଡ଼ିଲା ତ ସେମିତି ଫେରି ଦିଆଯିବ, ନୋଇଲେ ଆପଣଙ୍କୁ ନଗଦ ଟଙ୍କା ଦିଆଯିବ । ତାଙ୍କୁ ଟଙ୍କାଟା ସୁଝି ଦେଇ ହ୍ୟାଣ୍ଡନୋଟ ଫେରାଇ ଆଣିବେ ।

ବ୍ରା—ଜଗନ୍ନାଥେ ଜାଣନ୍ତି । ସେତିକି ହେଲେ ମୋର ଗଙ୍ଗାସ୍ନାନ ଫଳ । ଜାଇଁଯିବେ ଗୋଟେ ଚାଙ୍ଗୁଡ଼ି ବାଛୁରି କୁଟୁମ୍ବ ବାବୁ, ଆପଣଙ୍କ ଦୟାରୁ ।

ଉ—ଆପଣ ଆମ କଥା ଶୁଣିଲେ ହେଲା—

ବ୍ରା—ଯାହା କହିବେ କରିବି, ଆଜ୍ଞା !

ଉ—ବେଶି କିଛି ଆପଣଙ୍କୁ କଷ୍ଟ କରିବାକୁ ପଡ଼ିବ ନାହିଁ । ଆଚ୍ଛା, ଆଗେ କହନ୍ତୁ ନାଁ—କନ୍ୟାଟି କଅଣ ସୁନ୍ଦରୀ !

ବ୍ରା—ହିଁ, ସୁନ୍ଦରୀ ।

ଉ—ଦେଖିଛନ୍ତି, ନାଁ ଶୁଣିଛନ୍ତି !

ବ୍ରା—ରାମ, ରାମ, ଦେଖିବ କେମିତି ! ଶୁଣିବା କଥା—ସାଇରେ ସାଇରେ ପଚ୍ଛର କରି ଯାହା ବୁଝିଛି ସିନା !

ଉ—ଓ, ତେବେ ଶୁଣା କଥା ! କାନ ପାଖରୁ ଆଖିଟା ଚିକିଏ ଅନ୍ତର ଯେ ମିଶ୍ରେ ଆପଣେ ! ବାହାଘର ହଉ, ଆମର ଆପତ୍ତି ନାହିଁ ଯେ, ବାଳ କନ୍ୟାଟି ସୁନ୍ଦରୀ ହୋଇଥିବା ଦର୍କାର ।

ବ୍ରା—ଆପଣଙ୍କ ଲୋକ କିଏ ଯାଇ କନ୍ୟାକୁ ଥରେ ଦେଖି ଆସିଲେ ତ ଯାଆନ୍ତା !

ଉ—ଯୋଗାଡ଼ କରିବାକୁ ହେବ । ବୟସ ?

ବ୍ରା—କନ୍ୟାର ବୟସ ୧୮ କି ୧୯ ।

ଉ—ନୟ ଭଲ କଥା । ତାଙ୍କର କିଏ କିଏ ଅଛନ୍ତି, ନାଆଁ କଅଣ ମୁରବିଙ୍କର ?

ବ୍ରା—ବାପ ନାହିଁ, ଭାଇ—ବଡ଼ ଭାଇ ଅଛନ୍ତି । ତାଙ୍କ ନାଆଁ ରମା-ନାଥ । ତାଙ୍କର—

ଉ—ଆଉ, ଆଉ, ଏଇଠି ଗୋଟିଏ କଥା ଆପଣ କରିବେ । ଉପାନନ୍ଦ ବାବୁଙ୍କୁ ରମାନାଥଙ୍କ ନାଆଁ କହିଛନ୍ତି ପରା !

ବ୍ରା—ନାଁ ? କେଜାଣି । କହିଥିବ, ନାହିଁ କହିନାହିଁ ବୋଧହୁଏ ।

ଉ—ହେଲା ବା, ଆପଣ କହିଛନ୍ତି । ସେ ତ ଆଉ ଘରଦ୍ୱାର ଦେଖି ନାହାନ୍ତି; କି ଲୋକକୁ ଚିହ୍ନି ନାହାନ୍ତି !

ବ୍ରା—ନାଁ—

ଉ—ତେବେ ତ ଠିକ୍ । ସେଠି ଭଡ଼ା ଘର ମିଳିବ ?

ବ୍ରା—କେଜାଣି—ମଫସଲ ଜାଗା—

ଉ—ବୋଧହୁଏ ଖଣ୍ଡେ ଘର ଯୋଗାଡ଼ କରି ନେବାକୁ ହେବ, ଦୁଇ ଦିନ ପାଇଁ ।

ବ୍ରା—ଘରଟେ କଅଣ ହେବ ସେଠି ?

ଉ—ଧୋର୍ ତ ଆପଣ ପଚାରିଲେ ! କହିଲି ପରା କାରଣ କହିଁ ପଚାରିବେ ନାହିଁ ? ଆପଣ ଯୋଗାଡ଼ କରି ଦେଇପାରିବେ କି ନାହିଁ, ସେତିକ କହନ୍ତୁ ।

ବ୍ରା—ଦେଖିବ ।

ଉ—ଦେଖିବ ନୁହେଁ—ସେଥିପାଇଁ ଯାହା ଖର୍ଚ୍ଚ ପଡ଼ୁ, ଦି ଦିନ ଲଗି ଖଣ୍ଡେ ଭଲ ଘର ।

ବ୍ରା—ହଉ ।

ଉ—ଆଉ ମୁଁ ଯାହାକୁ କହିବ, ଆପଣ ରସାନନ୍ଦ ବାବୁଙ୍କୁ ଚିହ୍ନେଇ ଦେବେ ସେଇ ରମାନାଥ ବାବୁ ବୋଲି ।

ବ୍ରା—ମାନେ ?

ଉ—ସେଥିରୁ ଆପଣ କଅଣ ପାଇବେ ? ଯାହା ହେବ—ସେଠି । ଆପଣ ତ ଆପଣଙ୍କ ହାଣ୍ଡନୋଟଟି ଫେରି ପାଇଲେ ଗଲା— ଏତେ କଥାରୁ ଆପଣଙ୍କୁ ମିଳିବ କଅଣ ? କହନ୍ତୁ, ଏତିକ ପାରିବେ ?

ବ୍ରା—(ଭାବି) ଖୁଣ୍ଟଟାକୁ କେମିତି କହିବ ରମାନାଥ ବାବୁ ବୋଲି ।

ଉ—ଆହେ ନାଇଁ ହେ, ସତରେ ଖୁଣ୍ଟ ନୁହେଁ । ମୁଁ କଥାକୁ କହିଲି। ଖୁଣ୍ଟା କଅଣ ମଣିଷ ହେବ ? କୌଣସି ଏକ ଲୋକକୁ ଆପଣ ରମାନାଥ ବାବୁ ବୋଲି ରସାନନ୍ଦ ବାବୁଙ୍କୁ ଚିହ୍ନେଇ ଦେବେ ।

ବ୍ରା—ଏଟା ଜାଲ—

ଉ—କନ୍ତୁ ଠଙ୍କା ! ଏବେ କଥାରେ ଯେ ହାଣ୍ଡନୋଟର ସବୁ ଠଙ୍କା ଅସଲ ସୁଧ ଚୂକ୍ତି !

ଉ—କଅଣ, ହୁଁ କ ନାହିଁ କହନ୍ତୁ—

ଭ୍ରା—ହଉ କରିବ ।

ଉ—ବେଶ୍, ଭୋଜନ ତ ସରିଲା—ଉଠନ୍ତୁ—ଏଥର ଚାଲନ୍ତୁ ମୋ ସଙ୍ଗରେ ଆଜ ଟିକଏ କଥା ଅଛି ।

( ଦୁହେଁ ଉଠିଲେ )

———

## ପଞ୍ଚମ ଦୃଶ୍ୟ

( ଘରେ ନନ୍ଦା ଆସନ ପକାଇ ଫୁଲ ଚନ୍ଦନ ସଜାଡ଼ୁଥିଲା ରସାନନ୍ଦ ପୂଜା କରିବେ ବୋଲି । ପଛରୁ ତରତର ହୋଇ ଆସିଲା ରମେଶ, ନନ୍ଦା ପିଠିରେ ହାତ ଦେଇ କହିଲା । )

ରମେଶ—ନନ୍ଦା, ମନେ କରି ସବୁ କରିବୁ ତ ? ବାବା ଗାଧୋଇ ସାରିଲେଣି—ଆସୁଛନ୍ତି । କିଛି ଭୁଲିବୁ ନାହିଁ; ଠିକ୍ ଯେମିତି କହିଛି । କଥାଟା ବାଗେଇ ନେଇଥିବୁ ।

ନନ୍ଦା—ଆପଣ ଯାଆନ୍ତୁ, ମୁଁ ସବୁ ମନେ ରଖିଛି । ଠିକ୍ ଯେମିତି କରି ଦେବ । ସବୁ କରିବ ଆଜ୍ଞା—ବାକି ମୋର ପାଞ୍ଚ ଦୁଗୁଣେ ଦଶ ।

ରମେଶ—ଆଚ୍ଛା ହଉ, ତୁ କାମଟା ଆଗ କରି ଦେ, ତୋତେ ତ ଖୁସି କରିଦେଲେ ଗଲା ।

ନନ୍ଦା—ନାହିଁ ଆଜ୍ଞା, ସେତେବେଳକୁ ଆଉ କାହିଁକି ? ମୋର ସେଇ ପାଞ୍ଚ ଦୁଗୁଣେ· · ·ଆଗର ପିଠା—ପଛକୁ ମିଠା ।

ରମେଶ—ହିଁ, ଦଶ ଯା—

ନନ୍ଦା—ଆଜି କିଛି ହେଲେ—

ରମେଶ—( ଅଣ୍ଟା ଦେଖି ) ଏଇ ନେ ପାଞ୍ଚ ( ପାଞ୍ଚଟଙ୍କା ଦେଲା )

ନେପଥ୍ୟରୁ ରସାନନ୍ଦ—ନନ୍ଦା !

( ରମେଶ ଚଞ୍ଚଳ ଚାଲିଗଲେ )

ନଟା—(ଟଙ୍କା ଦେଖି ଗଣି ରଖୁ ରଖୁ) ଆଜ୍ଞା, ଏଇ ଘରେ କରନ୍ତୁ ପଶ !

ଉପାନନ୍ଦ—ହଉ !

ନଟା—( ଅଣ୍ଟାରେ ଟଙ୍କା ମାରି ) ଆରେ ବାବା, ଏଥିରେ ଯେବେ ଶନି ଦୃଷ୍ଟି ପଡ଼ିବ ! ଖୋଳ ତାଡ଼ି ନାକୁ ମୋର କେତେ କଥା ପଶୁରିବ । କୋଉଠୁ ଆଣିଲୁ—କ ଟଙ୍କା, କେତେ ଟଙ୍କା, ତୁ କୋଉଠୁ ପାଇଲୁ ? ମୋର ପାଞ୍ଚମାସର ଦରମା, ଦନାକେତେ ତ ଏଇନେ ଗୋଡ଼ ଉପରେ ଗୋଡ଼ ନଦ୍ଧ ଅଫିମ ଖିଆ ଖରଚ ଚଳିବ । ଖା, ଦିନକୁ କେତେ ଖାଇବ । ଆଜ ମାସ ଟଙ୍କାରେ ଘରକୁ ଖଣ୍ଡେ ଚଳବସ୍ତ କରି ଦେବ । ଏଥିରେ ବାକୀ ମହାଦେବଙ୍କର ଫୁଲ ବେଲପତ୍ରୀ ପଡ଼ିଲ । ଏତକ ଖାମ୍ ନଳ ନାରାୟଣଙ୍କ ଭୋଗ ଲାଗି ପାଣି ଛଡ଼ା ହୋଇ ରହିଲ । ଗୋଟିଏ ଅଧଲା ଏଥିରୁ ବରବାଦ ନ ଯାଏ । ( କନ୍ଥ କନ୍ଥ ଲଗାଇ କୁଞ୍ଚ କାନରେ ଗଣ୍ଠି କରି ଖୋସିଲ । )

ଉପା—କ ରେ ନଟା, କଅଣ ବଡ଼ର ବଡ଼ର ହଉଥିଲୁ ରେ ମନକୁ ମନ ! ଆଜ ତୁଟାଏ ଭିତ୍ତିଟା ବହାକ ପଡ଼ିଛି କ ରେ ?

ନଟା—ବଳଦଟାଏ ନା ଚୌପାଏ ଦୁହଁ ! ହାତରେ କାଣି କଉଡ଼ି ନାହିଁ, ତିନି ଦିନ ହେଲା ହାଣ୍ଡି ମାଙ୍କଡ଼ଶଟ ମାରୁଛି । ଆପଣ ବଡ଼ଲୋକ, ଆପଣ କାହିଁକି ଯେ କଥା ଜାଣିବେ, ଗରିବଙ୍କ ଦୁଃଖ କଷ୍ଟ !

ଉପା—ଉଁଃ, ତୁ ତ ନୋଇଲେ ଉପାସରେ ମରି ଯାଉଥିବୁ !

ନଟା—ନାଇଁ, ମୁଁ ଏଠି ସାଆନ୍ତ ଘରେ ପେଟକୁ ମୁଠେ ମିଳିଲେ କଅଣ ହେଲା, ପିଲାଏ ତେଣେ ଠକ୍ ଠକ୍ । ଏତେ ବଡ଼

ମେଘକୁ ଆଣିବା କରି ତ ଦୁଃଖ ଗଲା ନାହିଁ ! କାଲି ଏବେ କଂସା ଖଣ୍ଡେ ବନ୍ଧା ଦେଇ ଟୋକ ପାଣି ଚଳାଛୁ ।

ରଧା—କୋଉଠି ବନ୍ଧା ପକେଇଲୁ ?

ନନ୍ଦା—ମେଇ ପଡ଼ଶା ଘର ଗୁଡ଼ିଆ ମାଉ ପାଖେ । ଏତେଡ଼ ବଡ଼ କଂସାଟା ପଇସା ଛଅଣାକୁ ବନ୍ଧା ପଡ଼ୁଛି ।

ରଧା—କେତେଡ଼, କେତେଡ଼ େକଂସାଟାଏ ?

ନନ୍ଦା—( ହାତ ଦେଖାଇ ) ଏତୂଟେ, ଗୁରୁ ପାଞ୍ଚ ଟଙ୍କା ଉପରେ ହବ ।

ରଧା—ଆଉ ସୁଝିବୁ ନା ମୁକୁଳେଇବୁ ! କାହିଁକି—ସେଠି କାହିଁକି ଦେଲୁ—ଏଠିକି ନେଇ ଆସିଲୁ ନାହିଁ ? ଏଠି ତ ତୋ ଘରେ ଥିଲା ପରି ଥାଆନ୍ତା । ତା ଘରେ ବନ୍ଧା ପକେଇଲୁ ଯେ, ଆଉ କଂସା କି ନା କଂସା ଧୋଇକରି ପାଣି ! ଗଲା, ବୁଡ଼ିଲା ଅକାରଣ ମିନା ! ଏତେଡ଼ ବଡ଼ କଂସାଟା ବୋଲି କହୁଛୁ, ଏଠିକି ଆମର ଆଣିଥିଲେ ହେଇ ନ ଥାନ୍ତା ! ଏଠି ଥିଲେ ତ ଯେତେବେଳେ ତୋର ହାତରେ ଧନ ସୁବିଧା ହୁଅନ୍ତା, ଦିଅନ୍ତୁ, ନିଅନ୍ତୁ । ଏବେ ତାକୁ ସୁଝିବୁ କୋଉଠୁ ?

ନନ୍ଦା—ମୋର ଅଛି ବାଟ ।

ରଧା—ଦରମା ତ ? ଆଉ କି ବାଟ ! ମୋ'ର ତଣ୍ଟିରେ ଝୁଣିବୁ !

ନନ୍ଦା—ନାଇଁ, ଦରମା କାହିଁକି ! ଆଉ ବାଟ ଗୋଟେ ଭଗବାନ ଫିଟେଇ ଦେଲେଣି ।

ରଧା—ଆଉ ଚୁଲି ବାଟ···

ନନ୍ଦା—ବାହାଘର, ବାହାଘର ( ହସି ) କେତେ ପାଇବ । ଦ ପାଖରୁ ମିଳିବ । ସେଇଥିରେ କଂସା ମୁକୁଳେଇ ନେବ ନାଇଁ ?

ରଘା—ଦୂର୍ ଦୂର୍, ଆଗତ ଚଟ୍ଟେଇ କି ବେଣର ବଟା !
ବାହାଘର କାଇଁ, କନ୍ୟା କାଇଁ ? ସ୍ତାର ସ୍ତାଡ଼େ ଢୋଲ ଘୋଷଣୀ ବରାଦ ହୋଇଗଲା ! ଦେ, ଦେ, ଚନ୍ଦନ ଆଣ ।

ନଟା—(ଚନ୍ଦନ ବଟ୍ଟେଇ ଦେଇ) ସତେ ଅଜ୍ଞା, ଫେର କେବକୁ ଗଲା ?

ରଘା—ଆରେ, କନ୍ୟା ନ ଦେଖୁଣୁ ବାହାଘର ? ତୋତେ ପଗ୍ଳ କହୁଥିଲା ?

ନଟା—ମୁଁ ସେ ସବୁ ଖବ କରି ଠିକଣା କରି ସାରିଛି । କନ୍ୟା ଆଉ କଏ କାହିଁକି ଦେଖିବ ? ଆମେ ନିଜେ ଦେଖି ପ[illegible] କରିନେବା ।

ରଘା—କଅଣ, ତୁ ଦେଖିବୁ ?

ନଟା—ନାଇଁ ତ—ଆପଣେ—

ରଘା—ଉଁହୁଁ, ମୋତେ ସେ କନ୍ୟାକୁ ଦେଖାଇ ଦେବେ—ବାହା ନ ହେଉଣୁ କଅଣ—ଦୁଇ ଛୁଟା ବେଣି ଭିଡ଼ିବୁ କି ରେ ?

ନଟା—କାହିଁକି ? ତାର ବାଟ ଅଛି ନାଁ—

ରଘା—ଆଉ ବାଟ କଅଣ ? କେହି ଆମ ପଟରୁ ମାଇପି ଲୋକ ଗଲେ ଯାଇ ଦେଖିବ କି ?

ନଟା—ଆଉ ମାଇପି କମାର ଶାଳରେ ଗଢ଼ା ହଉଛନ୍ତି । ଖଣ୍ଡେ ଖଡ଼ଖଡ଼ କି ନୋଇଲେ ତାଟ ଶଗଡ଼ ଖଣ୍ଡେ ହେଲେ; ଆମେ ତ ଘରର ମାଇପି ।

ରଘା—ସ୍ତା କେମନ୍ତେ ହବ ?

ନଟା—ଯେମନ୍ତେ ହବ ମୁଁ କରିବି ନାଇଁ ! ଆମ ତାଟ ଶଗଡ଼ଟା ସଜଳ କରନ୍ତୁ । ଆଉ ସେ ମଧ୍ୟସ୍ଥ ମିଶ୍ର ନନାକୁ ଡାକ ବୋଲ୍

ଦେଖି ଯିବାକୁ କନ୍ୟା ଘରକୁ ଦିନ ଠିକଣା କରି ଖବର ଦେଲେ, ଦେଖିବା କନ୍ୟା କେମିତି ଦେଖା ହେବ ନାହିଁ ?

ରମା—ଦୂର ବେ, ତୋର ଯୋଉ ବୁଦ୍ଧି ।

ନତା—ମୋ ବୁଦ୍ଧି, ଅସଲ ବୁଦ୍ଧି ।

ରମା—ଏଇଟା କଉଣ ଖଟିରୁ ବାହାରିଛି ?

ନତା—ଖଟି ବୁଦ୍ଧି ଜବର ବୁଦ୍ଧି ଆଜ୍ଞା, ଆପଣ ମୋ କଥା କରନ୍ତୁ । ଖାଲି ଗୋଟେ କାମ କରିବାକୁ ପଡ଼ିବ । ଭଲ କରି ଆପଣ ନଶଟା ଶିଅର ହୋଇ ପଡ଼ିବେ—ସେକଥା ତ ମୋ ହାତର କଥା । ଆଉ ଖଣ୍ଡେ ସବୁଜ ଶାଢ଼ୀ—ଏଇ ହାଟ ପାଳି କିଣି ଆଣନ୍ତୁ ।

ରମା—ହଉ, ହଉ, ବୁଝିଲି ଗୋଟେ ଭଲ ବୁଦ୍ଧି ପାଞ୍ଚିଲୁ ଏକା ! ବାକି—

ନତା—ବାକି ଥାକି କିଛି ନୁହେ ଆଜ୍ଞା—କଥାରେ କହନ୍ତି ପରା— ଯାହା ନ ଦେଖିବ ବେନି ନୟନେ, ପରତେ ନ ଯିବ ଗୁରୁ ବଚନେ—ସେ୍ତ୍ର ବାହାଘରଟି ! ଖେଳଘର ତ ନୁହେ । ଆଉ ମଧ୍ୟ ଆପଣଙ୍କର କୋଉ ବଳ ଆସୁଛି ଯେ—ଏଇଟା ମନକୁ ନ ଆସିଲା, ଆଉ ଗୋଟେ ବାହା ହେବେ ? ଧନ ଯିନା ଦିନକୁ ଦିନ ବଢ଼ୁଛି, ବୟସ କଉଣ ମାଡ଼ି ଆସୁଛି ? ମୋ ସାନ କୁହା ମାନନ୍ତୁ । ନିଜେ ଦେଖି, ଆପଣା ମନ ଲାଖି, ଅପସରିଟିଏ ଘରକୁ ଆଣନ୍ତୁ । ଘର ଆଲୁଅ ହବ, କୁଳ ଉଜ୍ଜ୍ୱଳ ହବ । ମୋ କଥା କରନ୍ତୁ । ଖଣ୍ଡେ ରଙ୍ଗଣୀ ନୋହିଲେ ଚନ୍ଦ୍ରୀଗୁଣା ଶାଢ଼ୀ କିଣି ଆଣନ୍ତୁ ହାଟରୁ ।

ରମା—ହାଟରୁ ଗୋଟେ ନୂଆ ଶାଢ଼ୀ ଏଇଥିକି କଣାଯିବ ?

ନତା—ଆଉ ?

ରମା—ମଲା, ଯେତେ ହେଲେ ଘରଟେ କରନ୍ତୁ । ତୋ ଘରେ କଅଣ ଖଣ୍ଡେ ହେଲେ ଶାଢ଼ୀ ନ ଥିବ !

ନଟା—ମୋ ଘର ? ଶାଢ଼ୀ ! କେଉଁଠି ଛିଣ୍ଡା ଦଦରା ହୋଇ ପଡ଼ି ଥିବ । ମେ ପୁଣି ଆଣୁ ଏ ମଳାମଳା ହୋଇଥିବ । ଗଣ୍ଡାବ ଘର ।

ରମା—ଆରେ ହଉ, କାମ ଚଳିଯିବା କଥା । ଗୋଟେ ଅକାରଣରେ ୩।୪ ଟଙ୍କା ଖରଚ ! ଗୃହ ଛ ପଇସାର ଚଢ଼ା ନବାତ ବାନ୍ଧିଲେ ଆମ କାମ ସରିବ । ହେ, ତୁ ନେ—ଏ ଧୋଅଣୀଟା ଭଙ୍ଗାଇ ଦେବୁ । ପଇସାକର ଉଖୁଡ଼ା ଆଣ ଠାକୁର ଭୋଗ ହବ । ପଇସାଟିଏ ଘିଅ । ଆଉ ଘରକୁ କଅଣ ପରିବା ପତ୍ର ଥିବ ନ ଥିବ ବୁଝିକରି ଆଣ । ବାକୀ ଆଉ ଯୋଡ଼ଏ ପଇସା ରଖିବୁ । ଶାଢ଼ୀଟା ଘରୁ ଆଣି ଧୋବାକୁ କହିବୁ ଭଲକରି ଇସ୍ତ୍ରୀ କରି ସଫା କରିଦେବ । ନେ, ଯା, ଗଲୁ । ( ବଢ଼ାଇଲେ )

ନଟା—( ଧୋଅଣି ଧରିଲା, ଉଠିଲା )

ରମା—ମନେ ରହିଲା ତ ସବୁ ସ୍ୱଭାବ, ଦେଖ; କାନରେ ବାନ୍ଧି କରି ନେ । ଆଉ ନଶା ଯୋରରେ ହଜାହଜ କରନା—ଧୋଅଣୀଟାଏ ଟି !

ନଟା—ନାଇଁ, ହଜେଇ ଦେବି କାହିଁକି ?

ରମା—ହେ, କାନରେ ବାନ୍ଧ, ଅଣ୍ଟାରୁ ପଡ଼ିଯିବ କୁଆଡ଼େ । ବେଗେ ଆସିବୁ, ନୋଇଲେ କଣ୍ଡୁଆ ଚନା ଉଆଇଁବୁ ତେଣେ । ଅନେକ ବେଳୁ ଗାଧୋଇଲଣି । ପେଟ ଗରମ ହବ । ତୁ ବେଗେ ଉଖୁଡ଼ା ଆଣିଲେ ଠାକୁର ଭୋଗ ହେଲେ, ମୁଁ ଜଳଖିଆ କରିବି । ଯା—

ନତା—( ଗ୍ଲଲଗଲ )

ରମା—( ଶତା ଚୈତନ୍ୟ କର ଭଗବତ ପାଠକର ବସିଲେ )

ନେପଥ୍ୟେ—ନତା, ନନନ ଅଛୁ କ !

ରମା—ଏ କିଏ ଡାକୁବାର !

ନେପଥ୍ୟେ—ମୁଁ ତ ହର ମିଶ୍ରେ—

ରମା—ମିଶ୍ରେ ଆପଣେ ! ଆରେ ହଜଲ୍ ବଳଦ ଖୋଜଲ୍ ଠେଇ ।
ମୁଁ ତ ଏଇନେ ମନେ ମନେ ଖୋଜୁଥିଲ । ଟିକିଏ ରହନ୍ତୁ—
ମୁଁ ପୂଜାଟା ବଢ଼େଇ ଦେଇ ଯାଉଚ । ଇତି ଶ୍ରୀ ମଦ୍‌ଭାଗବତେ
କୃଷ୍ଣ ଉଦ୍ଧବ ସଂବାଦେ ନାମ ୬ମ ଅଧ୍ୟାୟେ ।
( ପୋଥିରେ ଡୋର ବାନ୍ଧି ବାନ୍ଧି ) ହରିବୋଲ ।
( ପୂଜାକୋଥଳି ବାନ୍ଧି ଉଠିଲେ । )
ଆଃ ! ଭୋଗଟା ହୋଇ ପାରଲ ନାହିଁ । ଗଲ ଯେ ଗଲ !
କେଉଁଠି ଖଟିରେ ବସିଥିବ । ଏଣେ ପେଟ ଗରମ ହବ !
ମିଶ୍ରେ ଆପଣେ ! ଗଲି, ଗଲି ( ପ୍ରସ୍ଥାନ ) ।

---

## ଷଷ୍ଠ ଦୃଶ୍ୟ

( ରତନପୁର ଗାଆଁ ଭିତର, ଗୋଟିଏ ଭଲ ଗୁଳଘର ଆଗରେ ସଡ଼କ କରରେ ଜଣେ ସାଧୁ ( ବାବାଜୀ) ଆଖି ମୁଦି ଧ୍ୟାନ କଲବା ପରି ବସିଥିଲେ । )

( ଉମେଶ ପ୍ରବେଶ ହସିଲା—ତା ପରେ ବାବାଜୀ ଙ୍କ ଘୁଣ୍ଡି କାଢ଼ିଲା )

ଉମେଶ—ବାବାଜୀ ମହାରାଜ ! ଦଣ୍ଡବତ ।

ବାବାଜୀ—(ହସି) ଦଣ୍ଡବତ, ଠିକ୍ କଲୁ ସବୁ ?

ଉମେଶ—(ସାମନାକୁ ଦେଖାଇ ) ଏଇ ତ ଘର । ବାକିସବୁ ମୁଁ ଠିକ୍‌କରି ଦେଇ ତୋତେ ଖବର ଦେବାକୁ ଆସିଲି । ମହେଶ, ଚନ୍ଦ୍ର, ଧନୀ ସମସ୍ତେ ଆସି ଯେ ଯାହାର ଦେହଛପା ଦେଇ ଆପଣା ଆପଣା କାମରେ ଅଛନ୍ତି । ତୁ ନିଶ୍ଚିନ୍ତ ଥା— କହିଲୁଣି କଅଣ କଲୁ ?

ବାବାଜୀ—( ଝୁଲି ଫିଟାଇ ) ନେ ।

ଉମେଶ—ସବୁ ପୂରଣ ହେଇ ଯାଇଛି ନାଁ ?

ବାବାଜୀ—ହଁ । ଓକିଲ ପରାମର୍ଶ କରି ସବୁ ଠିକ୍ ଠାକ୍ ।

ଉମେଶ—ବେଶ୍, ତୁ ଏଠି ବସି ଧ୍ୟାନ ଦେଖାଇ ଦେଇଥା – ଘରଟା ତ ତୋ ଆଗମୁହାଁ, ସବୁ ଦେଖିବୁ ଯେ ! ଦର୍କାର ପଡ଼ିଲେ ଗୋଟେ

ମିଛି ବାଜବ । ସେଇଠୁ ତୁ ତୋର କଣ୍ଠା କମ୍ବଳ ଗୁଡ଼ ଫେର୍ ନଜରୂପ ଧରି ଲମ୍ବେ ଲମ୍ବେ ଏଇ ଘର ଭିତରେ ପଶିବୁ ।

ବାବାଜୀ—ମୁଁ ଠିକ୍ ଅଛୁ । ତୁ ଯା—

ଉମେଶ—ଖାଲି ଶଗଡ଼ ବାଟକୁ ଗୃହିଁଛୁଁ । ଢେର ଦେଖି ସାଇକଲରେ ରବିଙ୍କ ପଠେଇଛି । ବାଟରେ ଦେଖିଲେ ଚଟ୍ ଫେରି ଆସି ଖବର ଦେଲେ, ଆମେ କେଣ ଭୂକ୍ଷା ପାଗପଟ୍ଟୁକା ଉଡ଼ିବୁଁ । ମୁଁ ଗଲି । ରବିଙ୍କ ଦେଖେଁ—

ବାବାଜୀ—ହଉ ଭାଇ ! ଧାଇଁ ଆଗ ଆସନ୍ତୁ ।

ଉମେଶ—ସେଇ ତ ମଜା । ଆଜ କାଲି ପ୍ରଗତି ଯୁଗରେ ନଶୁଆ ଗୋଧା ହେଲେଣି ଯେ (ହସିଲା) !

ବାବାଜୀ—ଆଚ୍ଛା, ଦେଖିବା !

ଉମେଶ—ଦର୍ଶନଙ୍କ କହ୍ଚୁ ପିଣ୍ଡିକା କାଢ଼ !

ବାବାଜୀ—ଆରେ ପିଣ୍ଡିକା ନୁହେଁ ମ; କହ ଯୌତୁକ ।

ଉମେଶ—( ନେପଥ୍ୟକୁ ଗୃହିଁ ) ରବି ଫେରିଲାଣି—
ମୁଁ ଯାଏ । ( ଗୃଲିଗଲା )

ବାବାଜୀ—( ପୁଣି ରାମ ନାମ ଜପିଲେ )

———

## ସପ୍ତମ ଦୃଶ୍ୟ

( ରତନପୁରର ମେଇ ବସାଘର, ଶଶୀ, ମଦନ, ଓ ରବି ଇତ୍ୟାଦି ରମେଶର ବନ୍ଧୁ, ନଟା ଓ ହରି ମିଶ୍ରେ ଅଛନ୍ତି ।)

ନଟ—ଆମକୁ ଉତ୍ତର ହବ ପାଆନ୍ତେ—

ରବି—ଭଲ କଥା ତୁମେ ଯାଅ—ତମର ଧାଙ୍ଗଙ୍କ ଡାକିଦିଅ, ଆସୁ । ଝିଅକୁ ଏଇ ଘରକୁ ପଠେଇ ଦଉଛୁଁ । ତୁମେମାନେ ସବୁ ବାହାରକୁ ଯାଅ—ଝିଅ ତ ଆଜି ତମମାନଙ୍କ ଆଗରେ ହବ ନାହିଁ ।

ମିଶ୍ରେ—ହଁ, ହଁ, ତା କେମିତେ ହବ ? ଯା ନଟନ, ଧାଙ୍ଗଙ୍କି କହି ଦେ ।

ନଟା—ଯାଉଚି—( ଚାଲିଗଲା )

ରବି—ମିଶ୍ରେ, କଅଣ ବୋଲି କହୁଛ ? ଏଇ ନଟାଟାକୁ ବୁଝାଇ ଦେଲେ କାମ ଶେଷ ।

ମିଶ୍ରେ—ଆପଣମାନେ କନ୍ୟାର ଭାଇ ବୋଲି ମୁଁ ଶନ୍ଧେଇ ଦେଇଛି ।

ଶଶୀ—ଭଲ କଥା—ତୁମେ ତେବେ ବାହାରେ ଥା—ମୁଁ କନ୍ୟାକୁ ନେଇ ଆସୁଛି, ରବି ! ଦୁଆତ କଲମ—ଟିପଚିହ୍ନ କାଳି ସବୁ ଠିକ୍‌ଠାକ୍ କରି ରଖିଥା ।

ମିଶ୍ରେ—ମୁଁ ତେବେ ବାହାରେ ଅଛି । ବାକି ମୋ କଥା ଲାଗିଲାଟି ।

ମହେଶ—ହଁ ସେଥିରେ ହେଲା ହବ ନାହିଁ । ଯାହା ଯବାବ୍—
ଯବାବ ।

ମିଶ୍ର—ଆଜ୍ଞା—( ଚାଲିଗଲେ )

ଶଶୀ—ମହେଶ—ଯା, ଆଗ ଯା—ତୁ ଯା ରବ, ଠିକ୍ କବାଟ ଆର-ପାଖେ ଥା ।

( ମହେଶ ଯାଇ ଝିଅ ନେଲ ଉପସ୍ଥିତ; ତେଣୁ ନାତା ଆସୁଛି ଧାଈ ସହିତ )

ମହେଶ—ଆରେ ନିତାଟା ତା ସଙ୍ଗରେ ଆସୁଛି ନେ—ତାକୁ ବିଦା କରେଁ—

ଶଶୀ—ହଁ, ହଁ, ଏକା ଧାଈ ଆସୁ ।

ମହେଶ—( ଚଞ୍ଚଳ ଚାଲିଗଲା )

ଶଶୀ—(ଧାଈକୁ ଆସିବାର ଲକ୍ଷ୍ୟକରି) ଯା, ଝିଅ ନେଇ ପାଖରେ ଥା—ଲାଜ କଅଣ ? ସେ ତ ସ୍ତ୍ରୀଲୋକ ଆସିଛି, କେହି ତ ମରଦ ନାହାନ୍ତି । ଲାଜ କଅଣ ଚୋର—

(ଧାଈ ଆସିଲା—ମୁହଁରେ ଲମ୍ବ ଓଢ଼ଣା ଦେଇ )

ଶଶୀ—ଧାଈ, ଝିଅକୁ ଦେଖିବ ପରା ? ଯା—ମୁହଁରୁ ଓଢ଼ଣା କାଢ଼ିଲୁ ଝିଅ—କାଢ଼ । ( ନ କାଢ଼ିବାରୁ ) ବଡ଼ ଲାଜକୁଳୀ ସେ । ଘରର ଝିଅ । ଆଜକାଲିକା ଟୋକୀଙ୍କ ପରି ତ ନୁହେଁ । କେଡ଼େ ଲାଜ, କେଡ଼େ ମହତ ! ତୁଳସୀପତ୍ର ଦ'ପତରରୁ ବାସେ ? ଆଜଠୁଁ ତ ଏତେ ଲାଜ କଲୁଣି ଲୋ ! ଶାଶୁଘରେ କଅଣ ନ କରିବୁ ? କାଢ଼, ଓଢ଼ଣାଟା କାଢ଼ । ଧାଈ ପରା ତୋତେ ଦେଖିକରି ଯିବେ ! ( କାଢ଼ିଲା ନାହିଁ ଓଢ଼ଣା ) ହଇ ଧାଈ, ତୁମେ ଯାଇ ତା ଓଢ଼ଣା କାଢ଼ି ଦେଖ—ମୁଁ ବାହାରକୁ ଯାଉଛି । ତୁମେ କଥାବାର୍ତ୍ତା ହେଇ ଆସ । ( ଚାଲିଗଲେ )

ଧାଈ—( ପାଖକୁ ଯାଇ ) ଓଢ଼ଣା କାଢ଼, ଲାଜ କଅଣ ?

( ଓଢ଼ଣା କାଢ଼ିଦେବା ବେଳକୁ, କନ୍ୟା ସାଜିଥିବା ଉମେଶ ଧାଈହୋଇ ଆସିଥିବା ରସାନନ୍ଦଙ୍କ ଓଢ଼ଣା କାଢ଼ି ଚଣ୍ଡିଟାପି-ଧରି କହିଲା )

ଉମେଶ—ଭଲ ମରଦ ଧାଈ ଆସିଛ ! ଏଥର ଦାହାଘରଟା ପାଶୋର ନ ଯିବା ଭଳି ପାନେ ହେଲେ ହବ ନାଁ—

ରସା—( ବକଳରେ ପାଟିକଲେ ) ମରିଗଲି, ଚଣ୍ଡିଟା ଟପି-ହୋଇଗଲା—

( ସମସ୍ତେ ଦୌଡ଼ି ଆସିଲେ )

ସମସ୍ତେ—କଅଣ, କଥା କଅଣ ? ଛାଡ଼ ଛାଡ଼ ତାଙ୍କୁ ।

ଉମେଶ—ଦେଖ ହେ ! ରସାନନ୍ଦ ବାବୁ ଧାଈ ସାଜି ନିଜେ କନ୍ୟା ଦେଖିବାକୁ ଆସିଥିଲେ ।

ରସା—ଛାଡ଼ ଛାଡ଼ ମୋତେ, ଓଃ ମରିଗଲି ମରିଗଲି ।

ଉମେଶ—ଶଶି, କାଗଜଟା ଆଣିବୁଟି । ଟିପଚିହ୍ନ, ଦସ୍ତଖତ ନେ । ପୋଲ କବଲାଟେ କରିଦେଇ ରମେଶର ବୋଉକୁ ଠକି ଦେଇ ପା'ର୍ । କଅଣ ନାଁ ଆଉ ଗୋଟେ ବାହା ହେବେ । ପୁଅ ହେବ ।

ଶଶୀ—ତାଙ୍କୁ ଛାଡ଼ ଦିଅ । ଭଦ୍ରଲୋକ ସେ, ଦସ୍ତଖତ କରି ଦେବେ ନାଇଁ ଯେ, ଚଣ୍ଡିଟା ଟପି ଧରିଚ ? ଚାଲ, ତାଙ୍କୁ ସେ ଘରକୁ ନେଇ ଚାଲ । ସବୁ ସେଇଠି କରି ଦେବେ ।

ଉମେଶ—ନ କରି ଯିବେ କାଇଁ ? ଏଠି ଆଉ ଡାକ ହାକ କଲେ କେହି ଶୁଣିବାକୁ ନାଇଁ । ତୁନି ରହ, ସୁନା ପୁଅଟି ପରି ଯାହା ଯୋଉଠି କହିବୁ ସବୁ ଦସ୍ତଖତ, ଟିପଚିହ୍ନ ଦେଇ ଆନନ୍ଦରେ ଘରକୁ

ଯାଅ—ଯିବ ? ( ଯବାବ ନ ପାଇ ) ପୁଣି ଯବାବ ନାହିଁ ?
( ଛଣ୍ଟି ଚପି ଦେଲା )

ରସା—ଉଃ ମଲି ମଲି ( ହାତ ଛଡ଼ାଇବାର ଚେଷ୍ଟା )

ଶଶୀ—ଛାଡ଼, ଛାଡ଼, ମରଯିବେ ସେ ମୋ ।

ଉମେଶ—ଜାହାନ୍ନୁ – ସବୁ କରିଦେବେ । ମିମ୍ ଦେଇ ଆମେ ସାବରେଜିଷ୍ଟ୍ରାରଙ୍କୁ ଏଇଠିକି ଡକାଇ ଆଣିବୁ, ସବୁ ଏଇଠି ରେଜିଷ୍ଟ୍ରିହେବ । ଯବାବ୍ କରନ୍ତୁ ।

ରସା —ହଁ, ମୋତେ ଆଗେ ଛାଡ଼ ।

ଉମେଶ—ସେ ଛାଡ଼ କାର୍ଯ୍ୟକରେ । ଚାଲ ସେମିତି, ଆଉ ଘରକୁ । ଆଗେ ଟିପ, ସନ୍ତକ ସରୁ ।

ଶଶି—( ଯାଉ ଯାଉ ) ରସାନନ୍ଦ ବାବୁ ! ଧନର କିଛି କ୍ଷତି ହେବ ନାହିଁ । ଚାଲନ୍ତୁ ।

ଉମେଶ—ସୁଧ ଦଗୁଣା ମିଳିବ । ଚାଲନ୍ତୁ ।

( ରସାନନ୍ଦଙ୍କୁ ଭିଡ଼ ଭିଡ଼ ନେଲ—ସମସ୍ତେ ହସୁ ଥାଆନ୍ତି । )

---

ପଟକ୍ଷେପ

## କୁଶୀଲବ :—

କଳିଙ୍ଗରାଜ

ମହାମନ୍ତ୍ରୀ

ଚଣ୍ଡାଶୋକ—କଳିଙ୍ଗବିଜେତା

ରାକ୍ଷସ—ଚଣ୍ଡାଶୋକଙ୍କର ସେନାପତି

ଉପଗୁପ୍ତ—ବୌଦ୍ଧ ଭିକ୍ଷୁ

ଉପାନନ୍ଦ— ,,

କଳିଙ୍ଗର ରାଜକେମା, ବୃଦ୍ଧା ଓ ଦେବୀବାଳିକା ଇତ୍ୟାଦି

---

## ପ୍ରଥମ ଦୃଶ୍ୟ

**ସ୍ଥାନ—କଳିଙ୍ଗ ରାଜପ୍ରାସାଦର ଏକ ଅଂଶ**

( ଚିନ୍ତିତମନରେ ପଦଚାରଣ କରୁଥିଲେ କଳିଙ୍ଗ ନରେଶ । ମହାମନ୍ତ୍ରୀ ଆସି ଅଭିବାଦନ କଲେ ।)

ମହାମନ୍ତ୍ରୀ—ଆମର ଆଉ ଆଶା ଭରସା ନାହିଁ ମହାରାଜ ! ଯଥାସମ୍ଭବ ଶୀଘ୍ର ରାଜପୁରୀ ପରିତ୍ୟାଗ କରିବାକୁ ହେବ । ଶତ୍ରୁସେନା ପ୍ରବଳ ବେଗରେ ମାଡ଼ି ଆସୁଛନ୍ତି । ଏଭଳି ପ୍ରଳୟ ଆକ୍ରମଣ କେବେହେଲେ କଳିଙ୍ଗ ଅନୁମାନ ସୁଦ୍ଧା କରି ନାହିଁ ।

ମହାରାଜ—ଆମର ପାଇକମାନେ କଅଣ ପଛଘୁଞ୍ଚା ଦେଉଛନ୍ତି ?

ମହାମନ୍ତ୍ରୀ—ପାଇକ ବଂଶ ନିର୍ମୂଳ ପ୍ରାୟ । ତାହା ଛଡ଼ା ନିରୀହ ଜନତା, ଶିଶୁ, ବୃଦ୍ଧ, କାହାରି ଜୀବନର ଆଶା ନାହିଁ । କଳିଙ୍ଗର ମାଳକଣା ପର୍ଯ୍ୟନ୍ତ ଆକାଶ ମାର୍ଗରେ ଉଡ଼ି ଯାଉଛି । କଳିଙ୍ଗର ପଶୁପକ୍ଷୀ, ଜୀବଜନ୍ତୁ ସମସ୍ତେ—ନିର୍ବିଚାରରେ ମଗଧର ଶତ୍ରୁ । ଚଣ୍ଡାଶୋକ ଆଦେଶ ଦେଇଛନ୍ତି, ରାଜ୍ୟ ସମୂଳେ ଧ୍ୱଂସ ହେଉ । ଲୁଣ୍ଠନ, ହତ୍ୟା ଚାଲିଛି । ପଥମଧ୍ୟରେ ଗୋଟିଏ ହେଲେ ଗ୍ରାମର ଚିହ୍ନ ବର୍ତ୍ତି ନାହିଁ । ଚାରିଆଡ଼େ ପ୍ରଚଣ୍ଡ ଅଗ୍ନି ଶିଖା ଆକାଶ ପର୍ଯ୍ୟନ୍ତ ବ୍ୟାପି ବିସ୍ତାର କରୁଛି । କେବେ କେବେ ଶୁଭୁଛି ମାତ୍ର କାହାରି କାହାରି ବିକଳ କ୍ରନ୍ଦନ, ଶ୍ୱାନ ଆଉ ଶୃଗାଳର ଆନନ୍ଦ ଚିତ୍କାର । ଚାରିଆଡ଼ ଶ୍ମଶାନରେ ପରିଣତ କରି ଶତ୍ରୁ ସେନା

ରାଜଧାନୀ ଅଭିମୁଖରେ ମାଡ଼ି ଆସୁଛନ୍ତି । ରକ୍ଷା ନାହିଁ, ରକ୍ଷା-ନାହିଁ ମହାରାଜ ! ଶୀଘ୍ର ପୁରୀ ତ୍ୟାଗ କରନ୍ତୁ ।

ମହାରାଜ—ଏତେବେଳେ ଭିକ୍ଷୁ ଉପଗୁପ୍ତ କେଉଁଠି ଥିବେ ?

ମହାମନ୍ତ୍ରୀ—କେହି କାହାର ସଂବାଦ ନେବାର କୌଣସି ସୁଯୋଗ ବା ନାହିଁ ? କାଳ **ବିଳମ୍ବ ଅନୁଚିତ,** ମହାରାଜ ! ତୁମ୍ଭେ ଅନ୍ତଃପୁର ମହିଳାମାନଙ୍କର ମାନ, ଜୀବନ ରକ୍ଷା ନିମିତ୍ତ ପ୍ରସ୍ତୁତ ହୁଅନ୍ତୁ । ଗୁପ୍ତ ମାର୍ଗରେ ସେମାନଙ୍କୁ ଖଣ୍ଡଗିରି ଆଡ଼କୁ ଶୀଘ୍ର ପଠାଇ ଦେବା ଶ୍ରେୟସ୍କର ମନେ କରୁଛି ।

ମହାରାଜ—ଆପଣ ବ୍ୟବସ୍ଥା କରନ୍ତୁ, ମୁଁ ଅନ୍ତଃପୁରକୁ ଯାଉଛି ।

ମହାମନ୍ତ୍ରୀ—ଆଜ୍ଞା ମହାରାଜ !

( ଦୁହେଁ ଦୁଇ ଦିଗକୁ ଚାଲିଗଲେ )

( ପ୍ରବେଶ କଲେ ରାଜକୁମାରୀ ଓ ଉପାନନ୍ଦ ନାମକ ଜଣେ ବୌଦ୍ଧଭିକ୍ଷୁ )

ରାଜକୁମାରୀ—କଳିଙ୍ଗର ସମସ୍ତ ଆଶା ଶେଷ ହୋଇ ଯାଇଛି । ମୋ ପରି ଜଣେ ସାମାନ୍ୟ ଯୁବତୀ ପାଇଁ ଲକ୍ଷ ଲକ୍ଷ ନର ନାରୀଙ୍କର ଧନ ଜୀବନ ନାଶ ହେଲା ସିନା; ଭିକ୍ଷୁ ଉପାନନ୍ଦ !

ଉପାନନ୍ଦ—ସମସ୍ତ ତଥାଗତଙ୍କର ଇଚ୍ଛା । ମହାପାପୀ ଚଣ୍ଡାଶୋକ ନିର୍ବିଚାରରେ ନରହତ୍ୟାର ଆଦେଶ ଦେଇଛନ୍ତି । ଏହା ଯୁଦ୍ଧ ନୁହେ । ଏ ଯୁଦ୍ଧରେ ନ୍ୟାୟର ସ୍ଥାନ ନାହିଁ । ଅତ୍ୟାଚାର, ଉତ୍ପୀଡ଼ନର ମାତ୍ରା ବେଳକୁ ବେଳ ବଢ଼ି ଚାଲିଛି, ଦେବି ! ଏକାବେଳେ ମାନବର କଳ୍ପନାତୀତ ଏ ଦୃଶ୍ୟ । ପୃଥିବୀ ପୃଷ୍ଠରେ ଏଭଳି ଅତ୍ୟାଚାର, ଅନ୍ୟାୟ ଅଭୂତପୂର୍ବ ! କିନ୍ତୁ ଉପାୟ କଅଣ ? ଗତିରୋଧ ବା ପ୍ରତିରୋଧର ଉପାୟ କଅଣ ?

ପ୍ରଜାହୀନ ରାଜ୍ୟରେ ଚଣ୍ଡାଶୋକ ରାଜତ୍ୱ କରିବାକୁ ସ୍ଥିର କରିଛନ୍ତି ?

ରାଜକୁମାରୀ—ରାଜତ୍ୱ ଲକ୍ଷ୍ୟ ନୁହେଁ, ଚଣ୍ଡାଶୋକଙ୍କର ଲକ୍ଷ୍ୟ-ଉତ୍ପୀଡ଼ନ; ଧ୍ୱଂସ । ନିଜର ହୀନ ପ୍ରତିହିଂସା ପ୍ରବୃତ୍ତି ଚରିତାର୍ଥ ନିମିତ୍ତ ଚଣ୍ଡାଶୋକଙ୍କ ପକ୍ଷେ ଅକରଣୀୟ କିଛି ନାହିଁ । ରାଜକୁମାର କୁନାଳଙ୍କ ଦୁଃଖମୟ ଜୀବନ କାହାଣୀ ତ ଶୁଣିଥିବେ !

ଉପାନନ୍ଦ—ସବୁ ଶୁଣିଛି, ଦେବି ! ଦୂରରୁ କାନ ଶୁଣୁଥିଲା, ଏବେ ନିକଟରେ, ଅତି ନିକଟରେ, ସମ୍ମୁଖରେ ଆଖି ମଧ୍ୟ ଦେଖୁଛି, ଅନୁଭବ କରୁଛି ସେ କଳ୍ପନାତୀତ, ନିର୍ମମ ଅତ୍ୟାଚାରର ବିଭୀଷିକା ।

ରାଜକୁମାରୀ—ଏ ସମସ୍ତ ଅନର୍ଥର ମୂଳରେ ମୁଁ । ଏକଥା ଅନୁଭବ କରି ପାରୁଛନ୍ତି ତ ?

ଉପାନନ୍ଦ—( ନୀରବ ରହିଲେ )

ରାଜକୁମାରୀ—ଏ ନରମେଧ ଯଜ୍ଞର ଆହୁତି ନିମିତ୍ତ ମୋର ଜୀବନ ଉତ୍ସର୍ଗ କରିବା ହିଁ ଶ୍ରେଷ୍ଠ ଧର୍ମ ନୁହେଁ କି ?

ଉପାନନ୍ଦ—( ଚମକି ) ଆପଣ କଅଣ କହୁଛନ୍ତି, ରାଜକୁମାରୀ !

ରାଜକୁମାରୀ—ଭିକ୍ଷୁ ଉପାନନ୍ଦ ! ଆପଣ ବିବେକକୁ ପ୍ରଶ୍ନ କରନ୍ତୁ । ନରହତ୍ୟା ନିରୋଧର ଏହାହିଁ ଏକମାତ୍ର ପନ୍ଥା । ମୁଁ ଏ ପ୍ରଳୟ ଅଗ୍ନିରେ ଝାସ ଦେବାକୁ ଦୃଢ଼ସଂକଳ୍ପ କରିଛି । ଆଜ୍ଞା ମୋତେ ବାଧା ଦିଅନ୍ତୁ ନାହିଁ । ଆପଣ ଭିକ୍ଷୁମାନଙ୍କୁ ନିରାପଦରେ ରଖିବାର ଭାର ଗ୍ରହଣ କରନ୍ତୁ । ଆସନ୍ତୁ ।

( ଦୁହେଁ ଚାଲିଗଲେ )

---

## ଦ୍ୱିତୀୟ ଦୃଶ୍ୟ

( ରଣକ୍ଷେତ୍ରର ଏକ ଅଂଶ—ନିକଟରେ ଛାଉଣୀ । ଶୁଭୁଥିଲା ଆହତର ବିକଳ ଚିତ୍କାର । କିଏ କାନ୍ଦୁଛି, କିଏ ଚିତ୍କାର କରୁଛି, କିଏ ଟିକିଏ ପାଣି ମାଗୁଛି । ଏହିପରି ସମୟରେ ଛାଉଣୀ ମଧ୍ୟରୁ ହଠାତ୍ ବୀର ଦର୍ପରେ ପ୍ରବେଶ କଲେ ଅଶୋକ—ମୁଖରେ ତାଙ୍କର ପ୍ରସନ୍ନତା । ସେ ଟିକିଏ କାନ ଡେରି ଶୁଣିଲେ ଏଇ ବିକଳ ଚିତ୍କାର । )

ଅଶୋକ—( ଖୁବ୍ ଯୋରରେ ହସିଲେ । ଏ ହସ ଯେପରି ଥମିବାର ନୁହେଁ । ଚିତ୍କାର ଯେତେ ଯୋରରେ ଶୁଣାଯାଉ ଥାଏ, ଅଶୋକ ସେତେ ଯୋରରେ ହସୁ ଥାଆନ୍ତି । ହସୁ ହସୁ ଡାକିଲେ ) ରାକ୍ଷସ ! ରାକ୍ଷସ ! ( ପୁଣି ହସୁ ଥାଆନ୍ତି । )

( ଶିବିର ଦିଗରୁ ବେଗେ ପ୍ରବେଶ ହେଲେ ମଗଧ ସେନାପତି ରାକ୍ଷସ—ସେ ଆସି ସମ୍ମାନ ପ୍ରଦର୍ଶନ କଲେ )

ରାକ୍ଷସ—ଆଦେଶ କରନ୍ତୁ ମହାରାଜ !

ଅଶୋକ—ସେନାପତି ! ( ଚିତ୍କାର ଆଡ଼କୁ ଠାରି ) ଶୁଣି ପାରୁଛ ?

ରାକ୍ଷସ—ମହାରାଜ !

ଅଶୋକ—କିଏ ପାରିବ ଏ କଥଣ ?

ରାକ୍ଷସ—(କୁଣ୍ଠିତ ହେବା ପରି ) କଳିଙ୍ଗର······

ଅଶୋକ—( ସେନାପତିଙ୍କ କଥା ଉପରେ, ହସି ) ହଁ, ହଁ, ଖାଲି କଳିଙ୍ଗ ନୁହେଁ—କଳାବତୀ କଳିଙ୍ଗର ସପ୍ତସ୍ୱରୀ ବୀଣାର ଝଙ୍କାର । ରାକ୍ଷସ ! ଆନନ୍ଦ ଦିଅ ! ମୋର ହୃଦୟରେ ରସ ମିଶାଇ ଦିଅ ସେନାପତି ! କଳିଙ୍ଗର ଉନ୍ନତ ମସ୍ତକ ଆଜ ନଇଁ ପଡ଼ୁଛି, ମଗଧର ରାଜଛତ୍ର ତଳେ । ବଡ଼ ଗର୍ବ ଥିଲା ତାର, ଭାରତବିଜୟୀ ସମ୍ରାଟ ଚନ୍ଦ୍ରଗୁପ୍ତ କଳିଙ୍ଗକୁ ପଦାନତ କରି ପାରି ନ ଥିଲେ । ସେହି ଗର୍ବରେ କଳିଙ୍ଗରାଜ ମୋର ବିବାହ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିଥିଲନ୍ତି । ତାର ପ୍ରତିଫଳ ଭୋଗ କରୁଛନ୍ତି ସାରା କଳିଙ୍ଗର ନରନାରୀ ।

(ନେପଥ୍ୟରୁ ପୁଣି ଆର୍ତ୍ତନାଦ)

ଶୁଣ, ଶୁଣ ରାକ୍ଷସ ! କଳିଙ୍ଗ ରାଜଲକ୍ଷ୍ମୀଙ୍କର ବୀଣାରେ ମଧୁର ଆଳାପନା । ଆଃ ! କି ମଧୁର ! କି ଲଳିତ ! (ସ୍ମିତ ହସି ଧରି) ଆଃ, ଏତେ ଦିନେ ପରିପୂର୍ଣ୍ଣ ହୃଦୟ ମୋର । (ଅଳ୍ପ ନୀରବ ରହି)ରାକ୍ଷସ ! ଅଶୋକ ତାର ପ୍ରତିଜ୍ଞା ରକ୍ଷା କରି ପାରିଛି । କେହି ଆଜ ଅସ୍ୱୀକାର କରି ପାରିବେ ନାହିଁ, ମଗଧର ଏ ବିଜୟ ଅଭିଯାନ । କଳିଙ୍ଗର ପୁରପଲ୍ଲୀ, ନଗର ପ୍ରାନ୍ତର—ଧୂଳିକଣା ପର୍ଯ୍ୟନ୍ତ·········

ରାକ୍ଷସ—କିନ୍ତୁ ମହାରାଜ ! ······(ସଙ୍କୋଚରେ ନୀରବ ହେଲେ)

ଅଶୋକ—(ଟିକିଏ ଭାବି, ପୁଣି ଗମ୍ଭୀର ଭାବେ) ହଁ ସେନାପତି ! ସେଇ 'କିନ୍ତୁ'—କିନ୍ତୁ କି ସାହସ, କି ଗର୍ବ, କି ଦମ୍ଭରେ ଅଦ୍ୟାପି କଳିଙ୍ଗ ରାଜକୁମାରୀଙ୍କ ବିବାହ ପ୍ରସ୍ତାବରେ ପରାଜିତ କଳିଙ୍ଗ ରାଜା ସମ୍ମତି ଦେଉ ନାହାନ୍ତି ? ଖୋଜିବାକୁ ହେବ—ସେଇ—କିନ୍ତୁ—ସେଇ କିନ୍ତୁର କାରଣ । ଏବେ ମଧ୍ୟ ତାଙ୍କର ବିଶ୍ୱାସ ଯେ, ତାଙ୍କର ତଥାଗତ କଳିଙ୍ଗରେ ସୁଖ ଶାନ୍ତି—

ଅଖଣ୍ଡ ରାଜତ୍ୱ ପୁଣି ଫେରାଇ ଆଣି ଦେବ ? ଏବେ ମଧ୍ୟ ପରାଜିତ ନର୍ତ୍ତକୀଙ୍କ ମୁଖରେ ସେ କାହାରକୁ ଗୁହାରି—

"ବୁଦ୍ଧଂ ଶରଣଂ ଗଚ୍ଛାମି !"

ରାକ୍ଷସ—ଅସମ୍ଭବ ମହାରାଜ ! ଯଦି ଏହା କହିଁ ହୁଏ ସତ୍ୟ—ତେବେ ବୁଝିବାକୁ ହେବ ଯେ, କଳିଙ୍ଗରାଜ ମତିଭ୍ରଷ୍ଟ—ବାତୁଳ ସେ ।

ଅଶୋକ—ଏବେ ମଧ୍ୟ ସମୟ ଅଛି ସେନାପତି ! ଏତେବେଳେ ମଧ୍ୟ ଯଦି ତାଙ୍କର ସଦ୍‌ବୁଦ୍ଧି ହୁଏ—କଳିଙ୍ଗ ଜେମା ବିଜୟୀ କରରେ ସମର୍ପିତା ହୁଅନ୍ତୁ, କଳିଙ୍ଗ ବିଜେତା ସମ୍ରାଟ ଅଶୋକ ସମସ୍ତ ପ୍ରତ୍ୟର୍ପଣ କରି ହସି ହସି ମଗଧକୁ ବାହୁଡ଼ି ନିବେ ।

ରାକ୍ଷସ—କିନ୍ତୁ, ସେ କଥଣ ଆଉ ସମ୍ଭବ ମହାରାଜ !

ଅଶୋକ—ଅସମ୍ଭବ ! କାହିଁକି ଅସମ୍ଭବ ? ମୁଁ ତ ସମସ୍ତ ପ୍ରତ୍ୟର୍ପଣ କରିବାକୁ ପ୍ରସ୍ତୁତ ଅଛି । ଏ ଅଶୋକର ବାକ୍ୟ—ଅଶୋକର ପ୍ରତିଜ୍ଞା । କଳିଙ୍ଗର ସୁନ୍ଦରୀ ରାଜକୁମାରୀ ଯଦି ··
(ନେପଥ୍ୟରୁ ମଧୁର କଣ୍ଠରେ ଶୁଣାଗଲା)

ବୁଦ୍ଧଂ ଶରଣଂ ଗଚ୍ଛାମି
ସଂଘଂ ଶରଣଂ ଗଚ୍ଛାମି
ଧର୍ମ୍ମଂ ଶରଣଂ ଗଚ୍ଛାମି ।

ଅଶୋକ—(ପର୍ବର କଥା ବନ୍ଦ କରି) ଓଃ, ପୁଣି ! (କାନଡେରି) ଦେଖ ରାକ୍ଷସ ! କିଏ !

(ରାକ୍ଷସ ସ୍ୱର ଆଡ଼କୁ ଅଗ୍ରସର ହେଲେ)

ଗଳାରେ କି ମାଧୁରୀ ! କିନ୍ତୁ···ପୁଣି ସେହି—

ବୁଦ୍ଧଂ ଶରଣଂ ଗଚ୍ଛାମି !

( ପ୍ରବେଶ କଲେ ଜଣେ ଅପରୂପ ମୂର୍ତ୍ତିମତୀ ସୁବର୍ଣ୍ଣ ଗୈରିକ-ବସନା, ଅଳଙ୍କାରହୀନା )

ଅଶୋକ—କିଏ ତୁମେ ଅଲୋକସାମାନ୍ୟ ସୁନ୍ଦରୀ ! କଳିଙ୍ଗର ଜଣେ ସାଧାରଣ ନାରୀର ଏତେ ରୂପ ! ତେବେ କଳିଙ୍ଗର ରାଜକୁମାରୀ······

ସୁବର୍ଣ୍ଣ—ବିଜୟୀ ମହାବୀର ! ଆପଣ ବର୍ତ୍ତମାନ କହୁଥିଲେ ନା ଯେବେ କଳିଙ୍ଗ ରାଜକୁମାରୀ ଆପଣଙ୍କ କରରେ ସମର୍ପିତା ହୁଅନ୍ତି···

ଅଶୋକ— ହଁ, ହଁ ସୁନ୍ଦରି ! ମୁଁ ପୁଣି ସମସ୍ତ ପ୍ରତ୍ୟର୍ପଣ କରିବାକୁ ପ୍ରସ୍ତୁତ ଅଛି । ଏ କେବଳ ମୁଖର କଥା ନୁହେଁ—ଦିଗ୍-ବିଜୟୀ ଅଶୋକର ପ୍ରତିଜ୍ଞା !

ସୁବର୍ଣ୍ଣ—ଏ ପ୍ରତିଜ୍ଞାର ମୂଲ୍ୟ ରକ୍ଷା କରିବେ ତ ମହାରାଜ !

ଅଶୋକ—ଏହା ମୋର ଚିରକାଳ ସତ୍ୟ । କଳିଙ୍ଗ-ରାଜ ମୋର ଅନୁରୋଧ ପ୍ରତ୍ୟାଖ୍ୟାନ କରି ନ ଥିଲେ, ଆଜି ମଗଧ ଆଉ କଳିଙ୍ଗ ଚିର ସ୍ନେହ-ବନ୍ଧନରେ ଆବଦ୍ଧ ହୋଇ ରହିଥାଆନ୍ତା । କିନ୍ତୁ······

ସୁବର୍ଣ୍ଣ—କିନ୍ତୁ କିଛି ନୁହେଁ ମହାରାଜ ! ଆପଣ ଏହି ଶପଥ ଆଜ୍ଞା ଘୋଷଣା କରି ପାରିବେ ? ତାହା ହେଲେ କଳିଙ୍ଗ ରାଜକୁମାରୀ ଆପଣଙ୍କର କରରେ ବୋଲି ମନେ କରନ୍ତୁ ।

ଅଶୋକ—ଅବଲମ୍ବେ ଏ ଘୋଷଣା ପ୍ରଚାରିତ ହେଉ । ରକ୍ଷୀ !

( ରକ୍ଷୀ ଆସିଲେ )

ରକ୍ଷୀ—ଯଥା ଆଜ୍ଞା ମହାରାଜ ! (ପ୍ରଣାମ କରି ବେଗେ ଚାଲିଗଲେ )

ଅଶୋକ—କିନ୍ତୁ ସୁନ୍ଦରି ! ତୁମକୁ ତୁମର ବାକ୍ୟ ରକ୍ଷା କରିବାକୁ ହେବ ।

ସୁବର୍ଣ୍ଣ—ମୋ ସାହାସ ନ ଥିଲେ, ମୁଁ ଜାଣି ଶୁଣି ପ୍ରଳୟର ଅଗ୍ନି କୁଣ୍ଡରେ ଝାସ ଦେବାକୁ ଆସି ନ ଥାନ୍ତି, ମହାରାଜ !

ଅଶୋକ—ତୁମେ ଏତେକ ସାହସ କିପରି କରୁଛ ?

ସୁବର୍ଣ୍ଣ—ମୋ କଥାରେ ଆପଣ ବିଶ୍ୱାସ ସ୍ଥାପନ କରନ୍ତୁ, ସମ୍ରାଟ !

ଅଶୋକ—କିନ୍ତୁ ଏ ବିଶ୍ୱାସର ଆଶ୍ୱାସ ?

ସୁବର୍ଣ୍ଣ—ପଥ ପରିଷ୍କାର । ମୁଁ ରାଜକୁମାରୀଙ୍କର ସମ୍ମତି ପାଇଛି ।

ଅଶୋକ—( ଆନନ୍ଦରେ ) ସମ୍ମତି ! କଳିଙ୍ଗ ରାଜକୁମାରୀଙ୍କର ସମ୍ମତି ! ତୁମେ—ତୁମେ ପାଇଛ ଯୁବତି ! ଏ କଅଣ ସତ୍ୟ ? ଏ କିପରି ସମ୍ଭବ ?

ସୁବର୍ଣ୍ଣ—ଅସମ୍ଭବ ମଧ୍ୟ କାଳେ ସମ୍ଭବ ହୁଏ ମହାରାଜ ! କିନ୍ତୁ ଆପଣଙ୍କର ଘୋଷଣା ପ୍ରଚାର ପୂର୍ବରୁ କୌଣସି କଥା ପ୍ରକାଶର ନିର୍ଦ୍ଦେଶ ନାହିଁ ।

( ନେପଥ୍ୟେ ନାଗରା ଶବ୍ଦ )

ଅଶୋକ—( ନାଗରା ଆଡ଼କୁ ନିର୍ଦ୍ଦେଶ କରି ) ଶୁଣ; ଶୁଣ ସୁନ୍ଦରୀ ! ରାଜାଦେଶ ଅବିଳମ୍ବେ ପ୍ରତିପାଳିତ ହୋଇଛି । ବର୍ତ୍ତମାନ······

ସୁବର୍ଣ୍ଣ—ପ୍ରସ୍ତୁତ ଅଛି ମହାରାଜ ! ସମ୍ମୁଖରେ ଆପଣଙ୍କର କଳିଙ୍ଗ ରାଜକୁମାରୀ—ଅଭିସାରିକା ।

ଅଶୋକ—କଳିଙ୍ଗ ରାଜକୁମାରୀ ! କିନ୍ତୁ ଏ ବେଶରେ ? (ଗୁଣ୍ଠି ରହି) ଭସ୍ମାଚ୍ଛାଦିତ ବହ୍ନି ଶିଖା ! ଦାହିକା ଶକ୍ତି ତାର ପରିଚୟର ଅବକାଶ ରଖେ ନାହିଁ, ରାଜକୁମାରି ! ଅଶୋକ ତାର ପ୍ରତିଜ୍ଞା ପୂରଣ କରିବ । ବିଜିତ ରାଜ୍ୟ, ଧନ ଧାନ୍ୟ ପ୍ରତ୍ୟର୍ପଣ କରିବ । ଅଶୋକ ସର୍ବସ୍ୱ ତ୍ୟାଗ କରିବାକୁ ପ୍ରତିଶ୍ରୁତି ଦେଉଛି । ଅଶୋକ ଆଜି କାହାର ବାଞ୍ଛା ଅପୂରଣ ରଖିବ

ନାହିଁ । ରାଜକୁମାରୀ ଦେଖିଲେ ଅଶୋକ କେବଳ ମହାବୀର ନୁହେ—ମହାଦାତା ମଧ୍ୟ ।

( ଥର ଥର ନଇଁ ନଇଁ ଗୋଟିଏ ବୁଢ଼ୀ ଆସିଛୁ )

ବୁଢ଼ୀ—( ବିକଳ କଣ୍ଠରେ ) କିଏ ଅଛ ବାପା ! ମହାରଜା କାହାନ୍ତି ?

ଯୁବରାଜ—କଅଣ ବୁଢ଼ୀ ! କଅଣ କହୁଚ , କହ । ମହାରାଜ ଅଶୋକ ତୁମ ଆଗରେ ଠିଆ ହୋଇଛନ୍ତି ।

ବୁଢ଼ୀ—( ମୁଣ୍ଡିଆ ମାରି ) ଦାଣ୍ଡରେ ଢେଣ୍ଡ଼ୁରା ଶୁଣିଲି । ମହାରାଜା ଯାହାର ଯାହା ଏ ଯୁଦ୍ଧରେ ନେଇଛନ୍ତି, ସବୁ ଫେରାଇ ଦେବେ । ଯେ ଯାହା ମାଗିବ, ସେ ତା ପାଇବ ! ଏ କଥା କଅଣ ସତ ?

ଅଶୋକ—ହଁ । ଏକଥା ନିବାର ସତ୍ୟ । ଯୁଦ୍ଧରେ ଯାହାର ଯାହା କ୍ଷତି ହୋଇଛି, ସେ ଫେରି ପାଇବ । ତୁମେ କଅଣ ମାଗୁଚ ବୁଢ଼ୀ ! କଳିଙ୍ଗ ଯୁଦ୍ଧରେ ତୁମର କି କ୍ଷତି ହୋଇଚି ?

ବୁଢ଼ୀ—( ବ୍ୟସ୍ତ ) ଏଁ ! ମଣିମା ! ତୁମ୍ଭେ, ମୁଁ ଗରିବ ଲୋକ ।

ଅଶୋକ—( ତିନି ତାଳି ମାରିଲେ—ସଙ୍ଗେ ସଙ୍ଗେ ପ୍ରତିହାରୀ ପ୍ରବେଶ କରି ଅଭିବାଦନ କଲେ ) ଏ ବୁଢ଼ୀକୁ ଏକଶତ ସ୍ୱର୍ଣ୍ଣ ମୁଦ୍ରା ଦିଅ ।

ପ୍ରତିହାରୀ—ଯେ ଆଜ୍ଞା ମହାରାଜ !

ବୁଢ଼ୀ—ନାହିଁ ନାହିଁ, ମଣିମା—

ଅଶୋକ—ତେବେ ଏକସହସ୍ର ସ୍ୱର୍ଣ୍ଣମୁଦ୍ରା ! ଯାଅ ।

( ପ୍ରତିହାରୀ ଚାଲିଗଲା )

ବୁଢ଼ୀ—ମୁଁ ତାକୁ ନେଇ କଅଣ କରିବି ? ମୋର ଧନ କଅଣ ହେବ ?

ଅଶୋକ—ତେବେ, ଖଣ୍ଡିଏ ଗ୍ରାମ ?

ବୁଢ଼ୀ—କିଏ ମୋର ଗାଁ ବୁଝାମଣା କରିବ ସ୍ବାମୀ, ମୋର କିଏ ଅଛି ? ତିନି ତିନୋଟି ଭେଣ୍ଡା ପୁଅ ଥିଲେ ମୋର । ଏଇ ଲଢ଼େଇକି ଆସି ଆଉ ବାହୁଡ଼ିଲେ ନାହିଁ । ବୁଢ଼ୀକାଳେ ମୁଁ ନିଆଶ୍ରା ହେଲି । ତୁଣ୍ଡରେ ପାଣି ଟୋପାଏ ଦେବାକୁ ଆଉ ତ କେହି ନାହିଁ । ମୋତେ ମୋ ପୁଅ ତିନିଟିଙ୍କି ବାହୁଡ଼ାଇ ଦିଅ ମଣିମା ! ବୁଢ଼ୀ ଲୋକ ! କେତେ କଇଲଣ କରିବ ।

ଅଶୋକ—ଅସମ୍ଭବ କଥା କହୁଚ, ବୁଢ଼ୀ !

ଯୁବକ—କାହିଁକି ମହାରାଜ ! ଆପଣ ତ ସତ୍ୟ କରିଛନ୍ତି—କ୍ଷତି ପୂରଣ କରିବେ । ଯାହାର ଯାହା ଯାଇଛି, ତାକୁ ତାହା ଫେରାଇ ଦେବେ । ତେବେ ନିଜର କଥା ନିଜେ ରଖି ନାହାନ୍ତି କାହିଁକି ? ସତ୍ୟ ରକ୍ଷା କରନ୍ତୁ ସମ୍ରାଟ୍ !

ଅଶୋକ—ଦେବ ! ଏ ଯେ ଅସମ୍ଭବ ପ୍ରାର୍ଥନା !

ଯୁବକ—ପ୍ରତିଜ୍ଞା ପୂର୍ବରୁ ଏକଥା ଭାବିବା ଉଚିତ୍ ଥିଲା, ମହାରାଜ ! ଦିଗ୍‌ବିଜୟୀ ସମ୍ରାଟ ଅଶୋକ ଯାହା ଦେଇ ନ ପାରିବେ, ତାକୁ ନେଲେ କାହିଁକି ? ଦେବାର ଅଧିକାର ନ ଥିଲେ, ନେବାର ଲୋଭ କାହିଁକି ?

ବୁଢ଼ୀ—ମୁଁ ଆଉ କିଛି ମାଗୁ ନାହିଁ ମଣିମା ! ମୋ ପିଲା ତିନୋଟିଙ୍କୁ ବାହୁଡେଇ ଦିଅନ୍ତୁ । ସ୍ବାମୀଙ୍କର ଉନ୍ନତି ହେବ ।...ଦେବେ ନାହିଁ, ମଣିମା ? ମିଛଟାରେ ତେବେ ରାଇଜ ଯାକ ଡିଣ୍ଡିମ ପିଟେଇ ଥିଲେ ? ବାୟାଣୀ ପରି ମିଛରେ ମୁଁ ଦଉଡ଼ି ଆସିଲି—ରଘୁରେ ! ଦାମରେ ! ବାମରେ ! ମୋ ଜିବା ଧନ ଆଉ ବାହୁଡ଼ାଇ ଦବ କିଏ ?

( କାନ୍ଦି କାନ୍ଦି କହି କହି ଚାଲିଗଲା )

( ଅଶୋକ ବୁଢ଼ୀକୁ ଚାହିଁ ରହିଲେ ନୀରବରେ )

ସୁବର୍ଣ୍ଣ—କାହିଁ ? ଉତ୍ତର ଦେଲେ ନାହିଁ ବିଶ୍ୱବିଜୟୀ ସମ୍ରାଟ ଅଶୋକ ! ନିଜର ବାକ୍ୟ ନିଜେ ରକ୍ଷା କରିପାରିଲେ ନାହିଁ ତ ।

[ ପ୍ରବେଶ କଲେ ଭିକ୍ଷୁ ଉପଗୁପ୍ତ ]

ଉପଗୁପ୍ତ—ବୁଦ୍ଧଂ ଶରଣଂ ଗଚ୍ଛାମି ।

ଅଶୋକ—କିଏ ଆପଣ ? ଆଗମନରେ ଅଭିପ୍ରାୟ ?

ଉପଗୁପ୍ତ—କଳିଙ୍ଗ ବିଜେତା ପ୍ରବଳ-ପରାକ୍ରାନ୍ତ ମହାରାଜ ଅଶୋକ ପ୍ରାର୍ଥୀର ବାଞ୍ଛା ପୂରଣ କରିବାକୁ ଘୋଷଣା କରିଛନ୍ତି । ମୁଁ ଜଣେ ନଗଣ୍ୟ ଭିକ୍ଷୁ । କିଞ୍ଚିତ୍ ଭିକ୍ଷା ପ୍ରାର୍ଥନା ଲାଗି···

ଅଶୋକ—ବୌଦ୍ଧ ଭିକ୍ଷୁ ଆପଣ । ଆପଣଙ୍କର ପୁଣି କି ଭିକ୍ଷା ପ୍ରାର୍ଥନା ?

ଉପଗୁପ୍ତ—ଧନ ଜନ ବା ରାଜ୍ୟ ନୁହେଁ ମହାରାଜ—ଅତି ସାମାନ୍ୟ ପ୍ରାର୍ଥନା ମୋର—ସୁଖ, ଶାନ୍ତି ।

ଅଶୋକ—ଜାଣନ୍ତି ତ କଳିଙ୍ଗ ଯୁଦ୍ଧର ଅବସାନ ଘଟିଛି । ତେବେ ଆଉ······

ଉପଗୁପ୍ତ—ଯୁଦ୍ଧ ଅବସାନ ହୋଇଛି ସତ୍ୟ, ମହାରାଜ ! କିନ୍ତୁ କାହିଁ ? ଫେରି ନାହିଁ ତ କଳିଙ୍ଗର ସେ ସୁଖ—ସେ ଶାନ୍ତି । ମହାରାଜ ତାହା ପ୍ରତ୍ୟର୍ପଣ କରିବେ—ରାଜଘୋଷଣାର ମର୍ଯ୍ୟାଦା ରକ୍ଷା କରିବେ—ଭିକ୍ଷୁର ଆଶା ପୂରଣ କରିବେ ସମ୍ରାଟ ! ଏଇ ନିବେଦନ ।

ଅଶୋକ—ମାନି, ବର୍ତ୍ତମାନ ତ ଆଉ ଆକ୍ରମଣର ଭୟ ନାହିଁ ଭିକ୍ଷୁ ! ତେବେ ଆଉ

ଉପଗୁପ୍ତ—ସତ୍ୟ କହିଛନ୍ତି ସମ୍ରାଟ ! ଆକ୍ରମଣ ନାହିଁ, କିନ୍ତୁ ତାର ପରିଣତି ? ଶୁଣି ପାରୁଛନ୍ତି [ନେପଥ୍ୟରୁ ଆର୍ତ୍ତଧ୍ୱନି ଶୁଭିଲା ] ।

ସମ୍ରାଟ ! ଏଇ ସୁଖ-ଶାନ୍ତିର ନଗରୀରେ ମର୍ମଭେଦୀ କାତର କ୍ରନ୍ଦନ । ଟିକିଏ ଅବହିତ ଚିତ୍ତରେ ଶ୍ରବଣ କରନ୍ତୁ, ମହାରାଜ ! କେବଳ ନିର୍ଘୋଷ ଜନତାର ନୁହେଁ—କଳିଙ୍ଗର ନିର୍ଜୀବ ପାଷାଣ ବକ୍ଷ ତଳେ ଗୁମରି ଉଠୁଛି ଅଶାନ୍ତିର ହାହାକାର । ପବନ ଦେବ ମନ୍ଦିରରେ ସନ୍ଧ୍ୟାରତିର ବାଦ୍ୟ ବାଦକ ଆଜି ଶୃଗାଳ, କୁକୁର, ଉଲ୍ଲୁକ !

ଅଶୋକ—( ଚମକିବା ପରି ) ଭିକ୍ଷୁ !

ଉପଗୁପ୍ତ—ଆଦେଶ କରନ୍ତୁ ସମ୍ରାଟ ; ଭିକ୍ଷୁର ପ୍ରାର୍ଥନା ପୂରଣ କରନ୍ତୁ । ( ନେପଥ୍ୟକୁ ଠାରି ) ଏଇ ଦେଖନ୍ତୁ, ଦେଖନ୍ତୁ ମହାରାଜ ! ଅଶାନ୍ତିର ଘୂର୍ଣ୍ଣିବାତ୍ୟା ହାହାକାର କରି ଧୂଳି ଗୋଟାଇ ଚାଲିଯାଏ । ମହାରାଜ ! ନିବେଦନ ରକ୍ଷା କରନ୍ତୁ । ଏ କେବଳ ମୋର ନୁହେଁ; ମାନବ ସମାଜର ସମ୍ମିଳିତ ନିବେଦନ । ଦିଗ୍‌ବିଜୟୀ ସମ୍ରାଟ ! ବିଜୟ ସାର୍ଥକ ହେଉ ଆପଣଙ୍କର । ଫେରାଇ ଦିଅନ୍ତୁ କଳିଙ୍ଗର ବିଗତ ସୁଖ ଶାନ୍ତି ।

ଅଶୋକ—ସୁଖ ! ଶାନ୍ତି ! ଭିକ୍ଷୁ ! ପ୍ରଳାପ ନୁହେଁ ତ ଆପଣଙ୍କର ?

ଉପଗୁପ୍ତ—ନା, ମହାରାଜ ! ତଥାଗତଙ୍କ ନାମୋଚ୍ଚାରଣ କରି କହୁଚି—ମୁଁ ସମ୍ପୂର୍ଣ୍ଣ ସୁସ୍ଥ । ଭିକ୍ଷା ମୋର କେବଳ —ସୁଖ,—ଶାନ୍ତି ।

ଅଶୋକ—ଭିକ୍ଷା ! —ଅସମ୍ଭବ ଏ ପ୍ରାର୍ଥନା !

ରାଜକୁମାରୀ—କିନ୍ତୁ ସମ୍ରାଟ, ଯେ ପ୍ରତିଜ୍ଞା କରିଥିଲେ !······ ।

ଅଶୋକ—ପ୍ରତିଜ୍ଞା !···କିନ୍ତୁ···

ଉପଗୁପ୍ତ—ବିଶାଳ ଧରାର ଅମିତ ବଳଶାଳୀ ଅଧୀଶ୍ୱର ଆପଣ । ଜଣେ ଦୀନାତିଦୀନ ଭିକ୍ଷୁର ସାମାନ୍ୟ ପ୍ରାର୍ଥନା ପୂରଣରେ କିନ୍ତୁ

ପ୍ରକାଶ କଲେ ? ତେବେ ମୁଁ ଆସୁଛି ମହାରାଜ ! ଆଜି, ବିଦାୟବେଳେ କହିଯାଏଁ କଳିଙ୍ଗବିଜେତାଙ୍କୁ, ମାନବ ଜୀବନର ସୁଖ ଶାନ୍ତିଦାତା ହିଁ ବାସ୍ତବରେ ବିଜେତା ! ହିଂସାର ଜୟ !—ସେ ତ ଶାନ୍ତିର ପରାଜୟ ମାତ୍ର ! ଆସୁଛି ମହାରାଜ !

ବୁଦ୍ଧଂ ଶରଣଂ ଗଚ୍ଛାମି ( ପ୍ରସ୍ଥାନ )

( ଅଶୋକ ତାଙ୍କ ଯିବା ପଥକୁ ଚାହିଁ ରହିଥା ନୀରବ )

ରାଜକୁମାରୀ—ନୀରବ ରହିଲେ ଯେ ବିଜୟୀ ସମ୍ରାଟ ! ପ୍ରତାଡ଼ିତ ଭିକ୍ଷୁର ସମୁଚିତ ଦଣ୍ଡବିଧାନ ନ କରି······

ଅଶୋକ—ଆଉ ନୁହେଁ ରାଜକୁମାରୀ ! ଚେତନା ଫେରି ଆସିଛି ମୋ'ର । ବୁଝି ପାରୁଛି କଳିଙ୍ଗ କେଉଁ ବଳରେ ବଳୀୟାନ୍, କାହିଁକି କଳିଙ୍ଗରାଜ ନିର୍ଭୀକ । ଜଣେ ସାମାନ୍ୟ ନାରୀ ଆଉ ଏକ ଧନହୀନ ଭିକ୍ଷୁ, ଆଜି ମୋର ଚକ୍ଷୁ ଫିଟାଇ ଦେଇଛନ୍ତି । ନେଇ ପାରୁଛି ମୁଁ—କିନ୍ତୁ ଫେରି ଦେବାର ଶକ୍ତି ମୋର ନାହିଁ—ମୁଁ ଅପହରଣ କରିଛି ଲକ୍ଷ ଲକ୍ଷ ନିରପରାଧ ଜନତାର ସୁଖ, ଶାନ୍ତି—ସର୍ବସ୍ୱ ! ମୋତେ କ୍ଷମା କରନ୍ତୁ ଦେବି !

ରାଜକୁମାରୀ—କ୍ଷମା ! ମୁଁ ତଥାଗତଙ୍କର ଗୁରୁ ସେବିକା ମାତ୍ର । ଆଉ ଭୁଜବଳଶାଳିନୀ କଳିଙ୍ଗ ରାଜଜେମା ତ ନୁହେଁ ! ସାମାନ୍ୟ ବୌଦ୍ଧ ଭିକ୍ଷୁଣୀ । ଆପଣ ରାଜ-ରାଜେଶ୍ୱର । ଆପଣ ବିଜେତା । ଚଣ୍ଡ ତରବାରୀର ନିର୍ମମ ଆଘାତରେ ସାମ୍ରାଜ୍ୟ ଜୟ କରିଛନ୍ତି, କିନ୍ତୁ ମହାରାଜ ! ପ୍ରଜା ସେନ ତ ଜିତା । ପ୍ରଜାର ହୃଦୟ ଆପଣ ଜୟ କରି ପାରି ନାହାନ୍ତି । ଜିଣିଛନ୍ତି କେବଳ ଗୋଡ଼, ମାଟି, ପର୍ବତ, କଙ୍କର, ନଦୀ, ନଦ—ଧାନ!

ନର୍ଜୀବ—ପ୍ରାଣହୀନ । ପ୍ରାଣର ବଳେଇତା ହିଂସା ନୁହେଁ—ପ୍ରେମ । ମହାରାଜ ଅଶୋକ; ପ୍ରଜାଶୂନ୍ୟ ରାଜ୍ୟର ରାଜସ୍ୱୀ ସମ୍ରାଟ୍ । କୋଟି କୋଟି ନରହର ଅଭିଶାପ ନିଃଶ୍ୱାସରେ ଆପଣଙ୍କର ରଜତ ସିଂହାସନ ବିଷାସିକ୍ତ । ବିଷ-ଦଂଶନ ଛଡ଼ା ଆପଣଙ୍କୁ ମଧୁ ଚୁମ୍ବନ ଦେଇ ପାରିବ ନାହିଁ ସେ । ବର୍ତ୍ତମାନ ତ ବୁଝି ପାରିଲେ—ନେବା ଯେତିକି ସହଜ—ଦେବା ସେତିକି କଠିନ,—କିମ୍ବା ଅସମ୍ଭବ । ସଚେତ ହୁଅନ୍ତୁ ମହାରାଜ ! ଏବେ ମଧ୍ୟ କାଳ ଅତୀତ ନୁହେଁ ।

ଅଶୋକ—କ୍ଷମା ! କ୍ଷମା କରନ୍ତୁ ରାଜକୁମାରୀ ! ଆପଣ ଦେବୀ । ଚଣ୍ଡାଶୋକର ଆଖି ଖୋଲି ଦେଇଛନ୍ତି । ସେ ନତ ମସ୍ତକରେ ମାଗୁଛି କ୍ଷମା ! (ତରବାରି ରାଜକୁମାରୀଙ୍କ ପଦତଳେ ରଖିଲେ)

ରାଜକୁମାରୀ—କ୍ଷମା ! ଏ ଜଗତରେ କ୍ଷମା ଦେବାର ଅଧିକାର ଏକା ସେହି ତଥାଗତଙ୍କର । କିମ୍ବା ତ ମୁଁ ତାଙ୍କର କ୍ଷୁଦ୍ର ସେବିକା ମାତ୍ର ! ପରମ ଦୟାଳୁ ସେ । ସେ ଆପଣଙ୍କୁ କ୍ଷମା ଦେବେ । ସର୍ବ ପାପହାରୀ, ସର୍ବ ଦୁଃଖହାରୀ, ପରମକାରୁଣିକ ସେହି ତଥାଗତଙ୍କର ଶରଣାଗତ ହୁଅନ୍ତୁ—

( ଆଖି ମୁଦି ହାତ ଯୋଡ଼ି )

ବୁଦ୍ଧଂ ଶରଣଂ ଗଚ୍ଛାମି
ସଂଘଂ ଶରଣଂ ଗଚ୍ଛାମି
ଧମ୍ମଂ ଶରଣଂ ଗଚ୍ଛାମି

( ଅଶୋକ ତଥାକରଣ )

—ପଟକ୍ଷେପ—

ମୁଦ୍ରାକର—ଶ୍ରୀ ହରେକୃଷ୍ଣ ବେହେରା
ନ୍ୟାଶନାଲ ପ୍ରେସ, ସାହେବଜାଦା ବଜାର କଟକ—୨